# ଶ୍ରଦ୍ଧା

ଶତ କର୍ଣ୍ଣିକାର କବି ଶ୍ରୀ ପଦ୍ମଲୋଚନ ମିଶ୍ରଙ୍କ ବିରଚିତ ଚନ୍ଦ୍ରାଂଶୁ ମୁକ୍ତମାଳା ଅଷ୍ଟୋତ୍ତର ଶତକର୍ଣ୍ଣି ନାମକ ଅମୂଲ୍ୟ ଦର୍ଶନ ଗ୍ରନ୍ଥଟି ପାଠ କରି ଅତ୍ୟନ୍ତ ଆପ୍ୟାୟିତ ହେଲି । ଗ୍ରନ୍ଥଟି ଦଶ ଓ ଦେଶର ପ୍ରଭୁତ କଲ୍ୟାଣ ସାଧନ କରିବ । ସର୍ବୋପରି ଗ୍ରନ୍ଥଟି ଏକ ଅପୂର୍ବ ଆଲୋକରେ ଉଦ୍ଭାସିତ ଯେ କୌଣସି ପାଠକ ପଠନ ମାତ୍ରେ ଅନୁଭବ କରିବେ ।

କବି ଶ୍ରୀ ପଦ୍ମଲୋଚନ ମିଶ୍ର ଦର୍ଶନ ବ୍ୟାଖ୍ୟାତ ବହୁ ବିଦ୍ୟାର ଅଧିକାରୀ । ଜଗନ୍ମାତାଙ୍କର ଅପାର କରୁଣାରୁ ତାଙ୍କ ନିକଟରେ ଥିବା ଜ୍ୟୋତିଷ ଜ୍ଞାନ ବର୍ତ୍ତମାନ ଯୁଗରେ ଏକ ପୁଣ୍ୟରେଖା ସଙ୍ଗେ ସମାନ । ସେତିକି ନୁହେଁ କବି ଅତି ଦୁରୂହ ଆୟୁର୍ବେଦ ଜ୍ଞାନ ମଧ୍ୟରେ ସମ୍ୟକ ଅଧିକାରୀ । ଗତ ପନ୍ଦର ବର୍ଷ ସମୟ ମୁଁ ଏ ପୁଣ୍ୟପ୍ରାଣ କବିଙ୍କ ସାନିଧ୍ୟ ଲାଭ କରି ଆସିଅଛି । କବି ପୁଣ୍ୟାତ୍ମ ପରୋପକାରସ୍ତ ପନ୍ଥାରେ ନିଜକୁ ନିଜାଇ ରଖିଅଛନ୍ତି । କବିଙ୍କର ବହୁସ୍ତ ଲେଖନୀ ଅନେକ ମୂଲ୍ୟବାନ ଗ୍ରନ୍ଥ ପ୍ରଣୟନ କରିଅଛି, ତାହା ଲୋକଲୋଚନକୁ ଆସି ଜଗତ କଲ୍ୟାଣରେ ବିନିଯୋଗ ହେଉ, ଏହାହିଁ ପରିସ୍ଥିର ପରମାତ୍ମା ଶ୍ରୀ ରାମଚନ୍ଦ୍ର ପତିତପାବନଙ୍କ ଠାରେ ଏକାନ୍ତ ପ୍ରାର୍ଥନା । ଇତି ।

ମାତୃ ଚରଣାଶ୍ରିତ

କବିରାଜ **ଶ୍ରୀ କୁଞ୍ଜବିହାରୀ ପଟ୍ଟନାୟକ**

୧-୪-୭୦

# ପଦେ ଅଧେ

ଶ୍ରୀଯୁକ୍ତ ପଦ୍ମଲୋଚନ ମିଶ୍ରଙ୍କ ଦ୍ୱାରା ଲିଖିତ ଚନ୍ଦ୍ରାଂଶୁ ମନ୍ତ୍ରମାଳା ଅଷ୍ଟୋତ୍ତରଶ ଶତକେଣି ଗ୍ରନ୍ଥଟି ଆମ୍ଭ ହାତ ପଡ଼ିଲି । ଆଜିର ଏହି ବସ୍ତୁତାନ୍ତ୍ରିକ ଯୁଗରେ ଆଧ୍ୟାତ୍ମିକ ଚିନ୍ତା ଭାବନା ଓ ଧର୍ମର ଲୁପ୍ତପ୍ରାୟ ହେବାକୁ ବସିଥିବା ବେଳେ ଲେଖକଙ୍କ ପରି କେତେକ ମୁଷ୍ଟିମେୟ ଧର୍ମପ୍ରାଣ ବ୍ୟକ୍ତି ସେ ସମ୍ବନ୍ଧରେ ନିଜର ଶକ୍ତି ନିୟୋଗ କରୁଥିବା ଏକ ଆଶ୍ୱାସନାର କଥା । ଆଜି ଅପେକ୍ଷା ବେ ଯୁଗରେ ବହୁତ ବହି ଲେଖା ଯାଉଛି, ଛପା ହେଉଛି, ପ୍ରଚାର ବି ଚାଲିଛି । କିନ୍ତୁ ସେ ମଧ୍ୟରୁ ବହୁତଙ୍କର ଯେ ବ୍ୟବସାୟାତ୍ମିକା ମନୋବୃତ୍ତିର ନିଖୁଣ ପ୍ରକାଶ, ଏହା କହିବା ବାହୁଲ୍ୟ ମାତ୍ର । ବହୁ ସଂଖ୍ୟାରେ ବହି ଚାଲିଛି-କିନ୍ତୁ ବହି କହିବା ଭଳି କେତେ ଖଣ୍ଡ ବହି ବଜାରରେ ବିକ୍ରୟ ହେଉଛି ଦେଖିବା କଥା । ଏଣୁ ଏ ଗ୍ରନ୍ଥଟି ବହୁ ମଧ୍ୟରୁ ଗୋଟିଏ ନ ହୋଇ, ଅଳ୍ପ ମଧ୍ୟରୁ ଗୋଟିଏ ବୋଲି କହିବାର ଯଥେଷ୍ଟ କାରଣ ରହିଛି ।

ଗ୍ରନ୍ଥଟି ମୋଟାମୋଟି ଦୁଇ ଭାଗରେ ବିଭକ୍ତ । ପ୍ରତ୍ୟେକରେ ଶହେ ଆଠ ଗୋଟି ଲେଖାଏଁ ସୂତ୍ରବାକ୍ୟ ରହିଛି । ପ୍ରତ୍ୟେକ ବାକ୍ୟର ବ୍ୟାଖ୍ୟା ଓ ବିଶ୍ଳେଷଣ ଦିଆ ଯାଇଛି । କେତେକ ସୂତ୍ର ଅତି ଭାବଗର୍ଭିତ ଓ ସୂକ୍ଷ୍ମ ଚିନ୍ତା ପ୍ରସୂତ । ତତ୍ତ୍ୱ ଓ ତଥ୍ୟର ସଂମିଶ୍ରଣରେ ତାହା ମନୋଜ୍ଞ ତଥା ରମଣୀୟ ହୋଇ ଉଠିଛି । ସେଥିରେ ଲେଖକଙ୍କର ଆନ୍ତରିକ ଚିନ୍ତା ଯେପରି ପ୍ରତିଫଳିତ, ଲେଖକଙ୍କର ସୌନ୍ଦର୍ଯ୍ୟ ସେହିପରି ସଂରକ୍ଷିତ ।

"ସର୍ବ ଲୋକ ମହେଶ୍ୱର ଈଶ୍ୱର
ଏକ ତେଜ ବିନ୍ଦୁ ମହା ବିଶ୍ୱର" ॥

ଓଁ

ଅର୍ଦ୍ଧ ମାତ୍ରା ନାମ ଧରେ ଶତତ
ମହା ଅନ୍ତ୍ୟକ୍ଷେ ବାର୍ତ୍ତି ପ୍ରଣତ ॥

ପ୍ରସ୍ତୁତ ସୂତ୍ର ବାକ୍ୟ ଗୁଡ଼ିକ ଯେ ଅତୀବ ଚମତ୍କାର, ଏଥିରେ ସନ୍ଦେହ ନାହିଁ ।

ତାତ୍ତ୍ୱିକତା ଗ୍ରମ ତାରକ, ଶବ୍ଦ ତତ୍ତ୍ୱ, ଶୂନ୍ୟଧାରଣା ପ୍ରଭୃତି ଗଭୀର ତତ୍ତ୍ୱ ଗୁଡ଼ିକ ଅତି ସହଜ ଓ ସୁବୋଧ ଭାବେ ଗ୍ରନ୍ଥ ଭିତରେ ସନ୍ନିବେଶିତ ହୋଇଥିବାରୁ ତାହା ସାଧାରଣ ଭକ୍ତି ଭାବାପନ୍ନ ଲୋକଙ୍କର ଯେପରି ଆଧ୍ୟାତ୍ମିକ ଧାରଣା ଜନ୍ମାଇବାରେ ସମର୍ଥ, ସେହିପରି ଜ୍ଞାନୀଙ୍କର ଯେ ସବୁ ଶାସ୍ତ୍ର ଜ୍ଞାନର ମଧ୍ୟ ସଂକେତ ବାହକ । ଗ୍ରନ୍ଥଟି ଓଡ଼ିଆ ସାହିତ୍ୟ ତଥା ଆଧ୍ୟାତ୍ମିକ ଗ୍ରନ୍ଥ ଶ୍ରେଣୀରେ ଏକ ବଶିଷ୍ଟ ସ୍ଥାନ ପାଇବାର ହକଦାର ଏହା ଯେ କେହି ପାଠକ ସ୍ୱୀକାର କରିବେ ।

ଶେଷରେ ମୋର ଏତିକି କହିବାର କଥା, ଆଧ୍ୟାତ୍ମିକ ସାହିତ୍ୟ କ୍ଷେତ୍ରରେ ଗ୍ରନ୍ଥ ରଚନା କରି କବି ଯେପରି ଧାର୍ମିକ ସମାଜର ଭାବୋଦୟ କରିବାରେ ସମ୍ୟକ୍ ଯତ୍ନଶୀଳ ହୋଇଛନ୍ତି, ସେହିପରି ଭବିଷ୍ୟତରେ ମଧ୍ୟ ଉତ୍କୃଷ୍ଟତର ଜନ୍ମିତ ସାହିତ୍ୟ ସୃଷ୍ଟି କରିବାରେ ମନୋଯୋଗ ଦିଅନ୍ତୁ—ଆଗେଇ ଚାଲନ୍ତୁ । ଜଗନ୍ନାଥ ତାଙ୍କ ଲେଖନୀକୁ ଗତିଶୀଳ କରାଇବେ ଏତିକି ପ୍ରାର୍ଥନା ।

ଡକ୍ଟର ବେଣୀମାଧବ ପାଢ଼ୀ
ସଂସ୍କୃତ ବିଭାଗ ଅଧ୍ୟାପକ
ରେଭେନ୍ସା କଲେଜ, କଟକ
ତା ୩୦-୩-୭୦

# କିଛି କହୁଛି... !!!

ଶ୍ରୀ ପଦ୍ମଲୋଚନ ମିଶ୍ର ଏକାଧାରରେ କବି, କବିରାଜ ଓ ଜ୍ୟୋତିର୍ବିଦ୍ । ସର୍ବୋପରି ଶାସ୍ତ୍ରଜ୍ଞ ମଣ୍ଡିତ । ଏ ଗୁଣ ଚତୁର୍ଧାର ସମ୍ୟକ ସମାହାର କ୍ୱଚିତ ଜୁଡ଼ଜନ୍ମ ଲାଭକରନ୍ତି । ଏହା ବିଭୁ ଆଶୀର୍ବାଦ ବିନା ଅନ୍ୟ କିଛି ନୁହେଁ ବୋଲି ମୋର ଦୃଢ଼ବିଶ୍ୱାସ ।

କବି ଜଣେ ମହତ୍ ଦ୍ରଷ୍ଟା । ସେ ତାଙ୍କର ଏହି ଅମୂଲ୍ୟ ଗ୍ରନ୍ଥରେ ଯୋଗ ଓ ତନ୍ତ୍ରର ଅପୂର୍ବ ପରିପ୍ରକାଶ କରି, ଯେଉଁ ମହାଶ୍ଚର୍ଯ୍ୟର ସନ୍ଧାନ ଦେଇ ଅଛନ୍ତି, ତାହା ଏହି ବସ୍ତୁତାନ୍ତ୍ରିକ ଯୁଗରେ ଏକାନ୍ତ ଦୁର୍ଲଭ କହିଲେ ଚଳେ । କହିବା ବାହୁଲ୍ୟ, ଏ ଗ୍ରନ୍ଥ ଖଣ୍ଡିକ ପଠନରେ ମନ ଋଷି ଯୁଗରେ ବିଚରଣ କଲାପରି ଅନୁଭୂତ ହୁଏ । ଭଗବାନ ତାଙ୍କର ଶକ୍ତିସ୍ପର୍ଶୀ ଲେଖନୀକୁ ଏ ଧର୍ମଗ୍ଳାନି ଯୁଗରେ ଜନ କଲ୍ୟାଣରେ ବିନିଯୋଗ କରନ୍ତୁ ଏତିକି ମାତ୍ର ପ୍ରାର୍ଥନା ।

ଶ୍ରୀ ମୁରାରି ମୋହନ ଜେନା ଏମ : ଏ :
ସଭାପତି, କଟକ ରାମଲୀଳା ପ୍ରଚାର ସମିତି

ଓଁ

# ପୂର୍ବଯୋଗିନୀ

ରଚନାରମ୍ଭ

ଓ

ରଚନା ସମାପ୍ତି

ଇଂ ୩୧ ଡ଼ିସେମ୍ବର ୧୯୬୯ ଧନୁ ମାସ ୧୭ ଦିନ ପୌଷ କୃଷ୍ଣପକ୍ଷ ସପ୍ତମୀ ବୁଧବାର ଉତ୍ତର ଫା: ନକ୍ଷତ୍ର କନ୍ୟା ଚନ୍ଦ୍ର ସୌଭାଗ୍ୟ ନାମ ଯୋଗ । ପୁନଃ ରଚନା ଉତ୍ତର ଯୋଗିନୀର ପରିସମାପ୍ତି ଇଂ ୩୧ ଜାନୁଆରୀ ୧୯୭୦ ।

ଓଁ

## ନମଃ ଶିବାୟ

ଏହେ ଆଠ ଗୋଟି କର୍ପୂର କଣ୍ଢିରେ
ରଚିଲି ଛୁଟର ହାର,
କମ୍ବୁରବେ ଶମ୍ଭୁ ଶିରେ ଚଢ଼ାଇଲି
ହୋଇବ ରସ କରି ସାର ।

ଯୋଗିମା ହୃଦୟୁ କଣ୍ଢି ଗୋଟି ଗୋଟି
ଶିବ ଲଲଟିକା ପରି,
ଭଜ୍ଞାନ ମନ୍ଦରେ ସଂଭୃତ ଆନେକ
ପୀୟୂଷ ବର୍ଷଣ କରି ।



ଏହି ଗ୍ରନ୍ଥଟିର ପ୍ରକାଶନରେ
ସଦାଶୟ ଶ୍ରୀ ଚନ୍ଦ୍ରଶେଖର ସୁବୁଦ୍ଧି (ସୁବୁଦ୍ଧି ଏଣ୍ଡ ସନ୍ସ) କଟକ
ଶ୍ରୀ ଚନ୍ଦ୍ର କିଶୋର ଦାସ (କିଶୋର ଟ୍ରାନ୍ସପୋର୍ଟ) କଟକ
ଶ୍ରୀ କୃଷ୍ଣଚନ୍ଦ୍ର ସାହୁ (ଅରବିନ୍ଦ ଲଜ୍) କଟକ
ଙ୍କର ସହୃଦୟତା ବିଦ୍ୟମାନ । ଏଣୁ ବର୍ଣ୍ଣିତ ଲେଖକ ଏବଂ ସହୃଦ ବ୍ୟକ୍ତି ମାନଙ୍କ ନିକଟରେ କୃତଜ୍ଞ ରହିଲି ।

ଶତକଣ୍ଠିକାର
ପଦ୍ମଲୋଚନ କବିରାଜ



ଓଁ

ଓଁକାର ନିଗମୈକ ବେଦମନଘଂ ବେଦାନ୍ତ ତତ୍ତ୍ୱାସ୍ପଦମ୍ ।
ଚୋତ୍ପତ୍ତି ସ୍ଥିତି ନାଶ ହେତୁ ମମଳଂ ବିଶ୍ୱସ୍ୟ ବିଶ୍ୱାତ୍ମକମ୍ ॥
ବିଶ୍ୱତ୍ରାଣ ପରାୟଣଂ ଶ୍ରୁତିଶତୈଃ ସମ୍ପ୍ରୋଚ୍ୟମାନଂ ପ୍ରଭୁମ୍
ସତ୍ୟଜ୍ଞାନ ମନନ୍ତ ମୂର୍ତ୍ତି ମମଳଂ ଶୁଦ୍ଧାତ୍ମକଂ ତ୍ୱାଂ ଭଜେ ॥
ଓଁକାର ବିନ୍ଦୁ ସଂଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗିନଃ ।
କାମଦଂ ମୋକ୍ଷଦଂ ଚୈବ ଓଁକାରାୟ ନମୋନମଃ ॥

ଓଁ

ବନ୍ଦେ ବନ୍ଦନୀୟ ଦେବ ଗଣରାଜ ଗଣପତି
ବନ୍ଦେ ବନ୍ଦନାରନ୍ତି ମା ଶୁକ୍ଳାମ୍ବର ସରସ୍ୱତୀ ।
ବନ୍ଦେ ଗୁରୁ ହିରଣ୍ୟ ବର୍ଣ୍ଣ ଉମାପତି ଶଶୀଧର
ଜଗତ୍ ଜନନୀ
ବନ୍ଦେ ଜନକ ତନୟା ରାମ ରମାବତାର ।



ଓଁ

ଜୟତୁ ଭାରତ ନମୁଛି ତୋ ପଦେ
ଛନ୍ଦ, ବନ୍ଧ, ସୀମା ଭୁଲି
ଛଅ ରାଗ ସଙ୍ଗେ ଛତିଶ ରାଗିଣୀ
ଷୋଡ଼ଶ କଳାକୁ ଛୁଇଁ ॥
ଅଣଚାଶ ବର୍ଣ୍ଣ ରଚନା ସ୍ତୁଭ
ଭୁଭ ଅର୍ଗଳରେ ଭବ
ଜୟ ଗାନେ ତୋର ଭାରତ; ଭାରତ
ମନ୍ତ୍ରେ ଏଷ୍ଟ ବସୁନ୍ଧରା ॥
ସୁଧୀବୃନ୍ଦେ ଯେବେ ମିଳନ୍ତି ମୋଦର
ଚନ୍ଦ୍ରଚୂଡ଼ କୃପା ବରି
ଯୋଗ ନଦୀ ଲଙ୍ଘି ରଚେ ରସାୟନ
ବିୟୋଗେ, ବିୟୋଗ କରି ॥
ଉତ୍କଳ ଭାରତୀ ଗିରେ ଲମ୍ବାଇଲା
ଦର୍ଶନ ବର୍ଣ୍ଣିଲ ଯାହା
ପ୍ରୟାସ ଏଥିରେ ପ୍ରବେଶ ମାତ୍ର
କର ବାରେ ଦେଖି ରାହା ।
ନିଗମର ଏଷ୍ଟ କଳପର ତରୁ
ଆଗମର ଅନ୍ତରୀକ୍ଷ
ଛଅ ଦର୍ଶନର ଛତିଶ ଗୁହଣୀ
ଅଷ୍ଟାଦଶ ପାଠ ଲକ୍ଷ୍ୟ ॥

ବେଦାନ୍ତର ରଥେ ସାରଥି ଯୋଗିଙ୍କ

ଅଷ୍ଟୋତ୍ତର ଶତକଣ୍ଠି

ବୃହଦ୍‌ବ୍ୟାସ ସୂତ୍ର ଧୂରନ୍ଧ ଷବ଼ସେ

ଯୋଗ ନଘା କଣ୍ଠି କଣ୍ଠି ॥

ଉପନିଷଦର ଉପାଖ୍ୟାନ ଏତ୍ତ

ସୂତ୍ରେ ମଣି ଗଣାଇବ

ଯୋଗ ମାର୍ଗେ ଯୋଗୀ ନିଏ ମଣି ଟାଣି

ସୂତ୍ର ମାତ୍ର ଜଣାଯିବ ॥



ଓଁ

# ଆଞ୍ଜନେୟଙ୍କୁ ନମଃ

ଅନିଳ ନନ୍ଦନ କୃପାକର ଆଞ୍ଜନେୟ
ନମସ୍ତେ ତନୁ ତବ ସୁରସ୍ତର ଧେୟ ।।

ରକ୍ତଧ୍ୱଜଧାରୀ ଶ୍ରୀମ ଗଦାବର ଧର
ରୁଚିର ଜବାର ହାରେ ମଣ୍ଡିତ ଶରୀର ।।

ଦାନବ ଦଳନ ଦୀନବନ୍ଧୁ ଭବତ୍ରାଣ
ବଜ୍ର ଅଂଗ ସିଦ୍ଧିଦାତା ଦୁଃଖିଜନ ପାଇଁ ।।

ଯୋଗ ଚିନ୍ତାମଣି ରାମ ପଦ ଅରବିନ୍ଦ
ଧ୍ୟାନରତ ମହାଯୋଗୀ ଯୋଗାନନ୍ଦ ନନ୍ଦ ।।

ସୁଧାଂଶୁଶେଖର ଅଂଶ ଅଂଶୁମାଳୀ ଧର
ସିନ୍ଦୂର ଚର୍ଚ୍ଚିତ ସିନ୍ଧୁ ଶୋଷଣ ନିକର ।

ଅନାୟାସେ ମେରୁ ଲଙ୍ଘି ଯିବାର ଉପାୟ
ତବ ପାଦପଦ୍ମ ବିନା ନାହିଁ ଅନ୍ୟଧ୍ୟେୟ ।।

ଶତକଣ୍ଠ ରଚନାକୁ ସାହା ହୁଅ ହର
ଦୁଷ୍କର ଏ ଯୋଗାନନ୍ଦ ସିଦ୍ଧ ମୋ ପ୍ରସର ।।



# ଶୁଦ୍ଧି ପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨ | ୯ | କେଉଁ | ଯେଉଁ |
| ୨ | ୧୨ | ପୃଷ୍ଟା | ପୃଷା |
| ୩ | ୩ | ସମାନ୍ୟ | ସାମାନ୍ୟ |
| ୮ | ୧ | ସଚଦାନନ୍ଦରେ | ସଚ୍ଚିଦାନନ୍ଦରେ |
| ୯ | ୨ | ବନ୍ଦ | ବନ୍ଦୁ |
| ୧୪ | ୧୨ | ମୂଚତଃ | ସତତ |
| ୧୯ | ୭ | ଭ୍ରେଳା | ଭେଳା |
| ୨୫ | ୫ | ମୃତ୍ୟୁ | ସତ୍ୟ |
| ୨୮ | ୫ | ପୂର୍ବ | ପୂର୍ଣ୍ଣ |
| ୩୩ | ୩ | କଚମ | କରମ |
| ୫୩ | ୯ | ଦେଲ | କଲ |
| ୫୭ | ୧୩ | ଉପସର୍ଗ | ଅପସର୍ଗ |
| ୬୪ | ୫ | ଗୂଢ଼କୁ | ଗୂଢ଼କ |
| ୬୫ | ୧୭ | ଜୀବତ୍ମା | ଜୀବାତ୍ମା |
| ୬୬ | ୭ | ଆସ୍ୱାଦାନ | ଆସ୍ୱାଦନ |
| ୬୮ | ୮ | ମହାନଦର | ମହାନାଦର |
| ୬୯ | ୧୩ | ଶଙ୍ଖରର | ଶଙ୍ଖରରେ |
| ୭୦ | ୧୧ | ମୁଁ | ମ |
| ୭୧ | ୫ | ଯୋଗାଭୂଚ | ଯୋଗାରୂଢ଼ |

| | | | |
|---|---|---|---|
| ୬୨ | ୧୯ | ଅନ୍ତର୍ସନ୍ନ | ଅନ୍ତର୍ଛନ୍ନ |
| ୬୨ | ୧୯ | ବହିର୍ସନ୍ନ | ବହିର୍ଛନ୍ନ |
| ୬୩ | ୧୪ | ସୂକ୍ଷ୍ମର | ସୂକ୍ଷ୍ମାକାର |
| ୬୩ | ୧୭ | ରତ୍ନକାସ୍ତୁ | ରତ୍ନମସ୍ତୁ |
| ୬୫ | ୮ | ଧାରଣା କରେ | ଧାରଣ କରେ |
| ୬୬ | ୨ | ସଂଗ୍ରାହ | ସଂଗ୍ରହ |
| ୬୭ | ୨ | ପରୁଷେ | ପୁରୁଷେ |
| ୬୯ | ୩ | ପଇ | ପାଇ |
| ୮୧ | ୨ | ଶନ | ଶୂନ |
| ୮୧ | ୧୮ | * (ସତ୍ୟରେ ସତ୍ୟର ଯୋଗ ପୁନଃ ସତ୍ୟରୁ) | |
| ୮୩ | ୧୧ | ସପ୍ତବ୍ୟହୃତ | ସପ୍ତବ୍ୟହୃତି |
| ୮୬ | ୧୨ | ମାଳାର | ମାଳାରେ |
| ୯୦ | ୩ | ବଢାଇ | ବଢ଼ାଇ |
| ୯୬ | ୪ | ବଳ | ଜଳ |
| ୯୬ | ୧୯ | ଚକ୍ଷୁରେ | ଚକ୍ଷୁର |
| ୯୮ | ୧୦ | ପଦାରବିନ୍ଦର | ପଦାରବିନ୍ଦରେ |
| ୯୮ | ୧୩ | ପୂର୍ବକ | ଅପୂର୍ବ |
| ୯୯ | ୧୫ | ଗମ୍ଭୀରେ | ଗମ୍ଭୀର |
| ୧୦୧ | ୧୧ | ପରିଚୟ | ପରିଚିତ |
| ୧୦୬ | ୧୨ | ତ୍ୟାଗର | ତ୍ୟାଗରେ |
| ୧୦୯ | ୧୦ | ଭାବବେଶେ | ଭାବାବେଶେ |
| ୧୧୦ | ୧୫ | ଅର୍ଜନ | ଅର୍ଛନ |

| | | | |
|---|---|---|---|
| ୧୧୬ | ୧୬ | ଅନୁବମ | ଅନୁବଗ |
| ୧୧୭ | ୨ | ଗମ | ବମ |
| ୧୨୦ | ୨ | ସରି | ସ୍ରି |
| ୧୨୧ | ୩ | ସୃଷ୍ଟି | ସ୍ପୃଷ୍ଟି |
| ୧୨୧ | ୪ | ଅହ୍ଲାଦ | ଆହ୍ଲାଦ |
| ୧୨୫ | ୧୯ | ନାଦାମ୍ବିକା | ନାଦାମ୍ବିକା |
| ୧୨୬ | ୨ | କ୍ଷାର୍ଦ୍ଧି | କ୍ଷାନ୍ତି |
| ୧୩୧ | ୧ | ଜ୍ଞାନରୂଢ଼ | ଜ୍ଞାନାରୂଢ଼ |
| ୧୪୩ | ୮ | ଅଚ୍ଛାଦିତ (ତାର ଆଚ୍ଛାଦିତ ନୁହେଁ) | |
| ୧୬୮ | ୧ | ନାହିଁ | କାହିଁ |
| ୧୭୧ | ୯ | ଜପୂନାଭବମ | ନପୂନାଭବମ |
| ୧୭୨ | ୫ | ଚଜ | ଓଜ |
| ୧୭୭ | ୧୫ | ନତ୍ତ୍ୱ | ତତ୍ତ୍ୱ |
| ୧୭୯ | ୧୫ | ଉଲ୍ଲଙ୍ଗନ | ଉଲ୍ଲଘନ |
| ୧୮୬ | ୬ | ବମ,ବମ | ବଗ, ବଗ |
| ୧୮୬ | ୧୧ | ଗେ | ଓଜ |
| ୧୮୬ | ୧୬ | (ବନ୍ଧ ପ୍ରଶ୍ରୀନନ୍ଦ ସ୍ମ ବମଦନ ଅଚନ୍ତ) | |
| | | (ବନ୍ଦ ପ୍ରଶ୍ରୀନନ୍ଦ ଦନ ସ୍ମବମ ଅଚନ୍ତ) | |
| ୧୮୯ | ୬ | ଉଦାନ୍ତ | ଉଦନ୍ତ |
| ୧୯୪ | ୧୧ | ରହମ୍ୟ | ରହସ୍ୟ |
| ୧୯୬ | ୧୩ | ବୁଦ୍ଧି | ବଛ |
| ୨୧୪ | ୧୫ | ଦ୍ୱାରରେ | ଦ୍ୱାରର |
| ୨୨୬ | ୨ | ସ୍ରଜନ | ସ୍ରଦନ |
| ୨୨୬ | ୪ | ସ୍ରଜନ | ସ୍ରଦନ |
| ୨୨୬ | ୧୮ | ଚନ୍ଦ୍ରିକା | ଚନ୍ଦ୍ରକା |



ଅନାଦି ଅନନ୍ତ ଅନନ୍ତ କାୟ
ଉ କାର ଅ କାର ମ କାର ତ୍ରୟ ॥

\+ \+ \+

ଅନାଦି—ଯାର ଆରମ୍ଭ ନାହିଁ
ଅନନ୍ତ—ଯାର ଶେଷ ନାହିଁ
ଅନନ୍ତ କାୟ—ଯାର ଶରୀର ସର୍ବୋପରି ମହା ଅନ୍ତରୀକ୍ଷ

ଉକାର ମକାର—ଉ ବର୍ଣ୍ଣାକ୍ଷର, ଅ ବର୍ଣ୍ଣାକ୍ଷର, ମ ବର୍ଣ୍ଣାକ୍ଷର
ଏ ବର୍ଣ୍ଣ ତ୍ରୟ—(ଉଅମ) ବର୍ଣ୍ଣତ୍ରୟ ॥

ହେ ପରଂ ବ୍ରହ୍ମ ପରମାତ୍ମା ମହାନ୍ ଅନନ୍ତରେ ତୁମର ଅନ୍ତ ମିଳେନା । ତୁମ୍ଭେ ଅନନ୍ତ କାୟ । ଅନନ୍ତ ଶକ୍ତ ତୁମଠାରେ ହିଁ ଲୀନ ହୋଇଅଛି । ବ୍ରହ୍ମାକ୍ଷର ବ୍ରହ୍ମନାଦ ଓଁ ରୂପୀ ତୁମ୍ଭେ ଉ କାର, ଅକାର ଓ ମକାର (ଉ+ ଅ+ମ) ରୂପ ଅଟ । ସର୍ବୋପରି ତୁମ୍ଭେ ବ୍ୟକ୍ତ ଓ ଅବ୍ୟକ୍ତ ଉଭୟ ସତ୍ତା ଅଟ ।

॥ ୨ ॥

ଓଁ

**ଯୋଗ ବର୍ଣ୍ଣା ଯୋଗ ର କାର ବର୍ଣ୍ଣ**
**ଅଗ୍ନି ବର୍ଣ୍ଣା ଭୋଗ ଆଧାର କର୍ଣ୍ଣ ॥**

+ + +

ଯୋଗ ବର୍ଣ୍ଣା—ଯୋଗ ବର୍ଣ୍ଣିତ
ଯୋଗ—ଯୁକ୍ତ
ର କାର ବର୍ଣ୍ଣ—ର ବର୍ଣ୍ଣାକ୍ଷର
ଅଗ୍ନି ବର୍ଣ୍ଣା—ଅଗ୍ନି ବର୍ଣ୍ଣ
ଭୋଗାଧାର କର୍ଣ୍ଣ—ପ୍ରାଣମୟ ଜଗତର ସଞ୍ଚାଳକ

ଜୀବାତ୍ମା ଓ ପରମାତ୍ମାର ଅର୍ଥାତ୍ (ପ୍ରକୃତି ଓ ପୁରୁଷର ମିଳନ କେଉଁ ସୂତ୍ରରେ ସଙ୍ଗଠିତ ହୁଏ, ତାହାର ନାମ ଯୋଗ ଅଟେ । ସୃଷ୍ଟି, ସ୍ଥିତି ଓ ପ୍ରଳୟର ଯୋଗ ମାଧ୍ୟମରେ (ଯୋଗ ମାଧ୍ୟମରେ) ରମଣୀୟ ର ବର୍ଣ୍ଣାକ୍ଷର ସ୍ରଷ୍ଟା ସମୁଦାୟ ଜଗତର ପୋଷଣକାରୀ ଅଟେ । ଏହା ଅଗ୍ନି ବର୍ଣ୍ଣା । ଅନନ୍ତ ବିଶ୍ୱରେ ପ୍ରାଣମୟ ଜଗତର ସଞ୍ଚାଳକ । ସ୍ଥିତିରେ (ଜଗଦାଧାରରେ) ଆଧାରଭୂତ, ଭୂତମାନଙ୍କର ଜନ୍ମ ମୃତ୍ୟୁ ଦୁଇର, ଏକ ମାତ୍ର କର୍ଣ୍ଣଧାର ଅଟେ ।

ଓଁ

# ସାମାନ୍ୟ ଯୋଗାର୍ଥେ ବିଶେଷ ବହ୍ନି
# ସତ୍‌ରୂପା ହିରଣ୍ୟ ବରେଣ୍ୟ ବର୍ଣ୍ଣୀ ॥

\+ \+ \+

ସମାନ୍ୟ—ପଡିତ ଉପଲବ୍‌ଧ । ବିଶେଷ କର୍ମ ଦ୍ୱାରା ପ୍ରାପ୍ତ କରାଯାଏ ।

ଯୋଗାର୍ଥେ—ଯୁକ୍ତ ଅର୍ଥରେ

ବହ୍ନି—ଅଗ୍ନି

ସତରୂପା—ସନାତନ ରୂପା

ହିରଣ୍ୟ ବର୍ଣ୍ଣୀ—ସୁବର୍ଣ୍ଣ ବର୍ଣ୍ଣା

ବରେଣ୍ୟ—ବରଣୀୟ

ଏହି 'ର'ତୈଜସ ବର୍ଣ୍ଣ ସାମାନ୍ୟ ଓ ବିଶେଷ ଦୁଇ ଭାବରେ ବିଭକ୍ତ ଅଟେ । ସାମାନ୍ୟ ସୂକ୍ଷ୍ମ ବ୍ୟାପକାଗ୍ନି ଅନନ୍ତ ବିଶ୍ୱରେ ନିତ୍ୟ ବିଦ୍ୟମାନ । ସାମାନ୍ୟ ଓ ସମାନ୍ୟ ଅଗ୍ନିର ନିଗୂଢ଼ ଯୋଗରେ ବିଶେଷାଗ୍ନି ସ୍ଥୂଳ ରୂପ ଧାରଣ କରେ । ଏହା ଅବ୍ୟକ୍ତରରେ ବ୍ୟକ୍ତ ସତ୍ ରୂପା ହିରଣ୍ୟ ବର୍ଣ୍ଣା ମହାଶକ୍ତିର ବରେଣ୍ୟ ରୂପ ଅଟେ ।

ଓଁ

**ଯୋଗ ବର୍ଣ୍ଣା ଯୋଗ ଅକାର ବର୍ଣ୍ଣ**
**ଶୁଭ୍ରବର୍ଣ୍ଣା ବେଗ ଆଧାର କର୍ଣ୍ଣ ॥**

\+ \+ \+

ଯୋଗ ବର୍ଣ୍ଣା—ଯୋଗ ବର୍ଣ୍ଣିତ
ଯୋଗ—ଯୁକ୍ତ
ଅକାରବର୍ଣ୍ଣ—ଅ ବର୍ଣ୍ଣାକ୍ଷର
ଶୁଭ୍ରବର୍ଣ୍ଣା—ଶ୍ୱେତ ବର୍ଣ୍ଣା
ବେଗାଧାର କର୍ଣ୍ଣ—ପ୍ରାଣାଧାର

ସୃଷ୍ଟି, ସ୍ଥିତି ଓ ପ୍ରଳୟର (ଯୋଗମାୟା) ଯୋଗ ବର୍ଣ୍ଣିତ ତନ୍ମୟୀ "ଅ" ବର୍ଣ୍ଣାକ୍ଷର ପ୍ରାଣାଧାର ଅଟେ । ଏହା ଶୁଭ୍ରବର୍ଣ୍ଣା । ଅନନ୍ତ ବିଶ୍ୱରେ ସୃଜନ କ୍ରିୟା ଏହି ପରମ ଶୁଭ୍ରତାର ମାଧ୍ୟମରେ ହିଁ ସମ୍ଭବ ହୁଏ । ଜନ୍ମ ମୃତ୍ୟୁ ଦୁଇ ପୂର୍ଣ୍ଣ ବିନ୍ଦୁର ଏହା ପରିଣାମଦର୍ଶୀ ବର୍ଣ୍ଣ ଅଟେ ।

ଓଁ

**ପଞ୍ଚ ମହାଭୂତେ ଭୂତ ପ୍ରକୃତିସ୍ଥା**
**ଚିତ୍‌ରୂପା ଚିନ୍ମୟୀ ଚିନ୍ମନା ଶ୍ରୀୟା ॥**

\+ \+ \+

ପଞ୍ଚ ମହାଭୂତ—କ୍ଷିତି; ଅପ, ତେଜ୍, ମରୁତ୍, ଓ ବ୍ୟୋମ

ଭୂତ ପ୍ରକୃତିସ୍ଥା—ପ୍ରାଣୀ ମାନଙ୍କର ସାମ୍ଭବ୍ୟ

ଚିତ୍ ରୂପ—ଚୈତନ୍ୟ ରୂପା

ଚିନ୍ମୟୀ—ଚିତ୍‌ମୟୀ

ଚିନ୍ମନା—ଚିନ୍‌ମନା

ଶ୍ରୀୟା—ପରମ ଲକ୍ଷ୍ମୀ (ମହାଲକ୍ଷ୍ମୀ)

ପଞ୍ଚ ମହାଭୂତ (କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ)ରେ ସଚରାଚର ଭୂତ, ପ୍ରାଣୀ ମାନଙ୍କର ସମ୍ଭବ ଘଟିଥାଏ । ଏହି ପଞ୍ଚ ମହଭୂତର ଜନ୍ମଦାୟୀ ଚିତ୍‌ରୂପା ଅଟେ । ମହର୍ଷି ବ୍ରହ୍ମ ଯୋନି ରୂପ ଧାରଣ ପୂର୍ବକ ମହତ ରେତକୁ ଆଶ୍ରୟ ଦେଇଥାଏ । ଏହି ପରମ ଲକ୍ଷ୍ମୀ ରୂପା ଚିନ୍ମନା ମହାଶକ୍ତି, ନିଜେ ନିଜର ପ୍ରକାଶରେ ଅତ୍ୟନ୍ତ ଚିନ୍ମୟୀ ଅଟେ ।

ଓଁ

## ଯୋଗ ବର୍ଣ୍ଣା ଯୋଗ ମକାର ବର୍ଣ୍ଣ
## ନୀଳବର୍ଣ୍ଣା ଭୋଗ ଆଧାର କର୍ଣ୍ଣ ॥

+ + +

ଯୋଗ ବର୍ଣ୍ଣା—ଯୋଗ ବର୍ଣ୍ଣିତ

ଯୋଗ—ଯୁକ୍ତ

ମ କାର ବର୍ଣ୍ଣ—ମ ବର୍ଣ୍ଣାକ୍ଷର

ନୀଳ ବର୍ଣ୍ଣା—ନୀଳ ବରଣା

ଭୋଗାଧାରକର୍ଣ୍ଣ—ସମୁଦାୟ ଜଗତ ପ୍ରତିପାଳ କର୍ଣ୍ଣଧାର

ସୃଷ୍ଟି, ସ୍ଥିତ ଓ ପ୍ରଳୟର ଯୋଗ ମାତ୍ର (ଯୋଗ ବର୍ଣ୍ଣା) ଆହ୍ଲାଦମୟୀ 'ମ' ବର୍ଣ୍ଣ କ୍ଷର ପୂର୍ଣ୍ଣାନନ୍ଦ ଶକ୍ତିର ସଙ୍ଗ ଅଟେ । ଏହା ନୀଳବର୍ଣ୍ଣା । ଅନନ୍ତ ଖଣ୍ଡର ଅନନ୍ତ ନୀଳିମା ମଧ୍ୟରେ ଯେଉଁ ମହତ୍ତ୍ୱ ସୃଜନ ଲୀଳାର ପ୍ରକାଶ ସମ୍ଭବ ହେଉଅଛି, ତାହାହିଁ ମ ବର୍ଣ୍ଣ କ୍ଷର ର କୃପା ମାତ୍ର । ଏହା ସମୁଦାୟ ଜଗତ୍ ପ୍ରତିପାଳର ଆଧାର ବା କର୍ଣ୍ଣ ଅଟେ ।

ଓଁ

## ଅନ୍ତରୀକ୍ଷେ ଅନ୍ତ ପ୍ରଳୟ କେତୁ
## ଯୋଗାନନ୍ଦ ବନ୍ଧ ସମାଧି ସେତୁ ॥

\+ + +

ଅନ୍ତରୀକ୍ଷ—ମହାକାଶ
ଅନ୍ତ—ଶେଷ
ପ୍ରଳୟକେତୁ—ଯାହା ଅବଶେଷ, ସତ୍ତ୍ୱ
ଯୋଗାନନ୍ଦ — ଯୋଗଦ୍ୱାରା ଉପଲବ୍ଧ ପରମାନନ୍ଦ
ବନ୍ଧ—ପ୍ରତିଷ୍ଠିତ
ସମାଧି—ଚିତ୍ତ ବୃତ୍ତିର ନିରୋଧ
ସେତୁ—ପୋଲ

ଯେ ଏହି ମହାନ୍ ଅନ୍ତରୀକ୍ଷର ଅନ୍ତରାତ୍ମା, ଯେଉଁ ମହା ତେଜ ଛନ୍ଦ ସମୁଦାୟ ଚରାଚର ଜଗତର ପ୍ରଳୟ ରୂପୀ ଅବଶେଷ, ଯେ ପୂର୍ଣ୍ଣ ଯୋଗାନନ୍ଦ ମଣ୍ଡଳ ଏବଂ ଯାହାଙ୍କୁ ସମାଧି ରୂପ ସେତୁଦ୍ୱାରା ପ୍ରାପ୍ତ କରାଯାଏ, ସେହି ଏହି ସର୍ବବ୍ୟାପୀ ଅନ୍ତଃ (ଶେଷ) ମ ବର୍ଣ୍ଣାପର ଅକ୍ଷର ବର୍ଣ୍ଣ ମ ଅଟେ ।

ଓଁ

ସଚ୍ଚିଦାନନ୍ଦରେ ଆନନ୍ଦ ବିନ୍ଦୁ
ଉ କାର ମ କାର ଚିତ୍କାର ସିନ୍ଧୁ ॥

\+ + +

ସଚ୍ଚିଦାନନ୍ଦରେ ଆନନ୍ଦ ବିନ୍ଦୁ —ପରମାତ୍ମା
ଉକାର ମକାର—ଉ+ଅ+ମ— ବର୍ଣ୍ଣସଙ୍ଘ
ଚିତ୍କାର —ତିନିବର୍ଣ୍ଣର ଘନୀଭୂତ ଅବସ୍ଥା
ସିନ୍ଧୁ-ସମୁଦ୍ର

ସତ୍, ଚିତ୍ ଆନନ୍ଦର ଘନୀଭୂତ ଅବସ୍ଥା ସଚ୍ଚିଦାନନ୍ଦ ଘନ ପରମାତ୍ମା ପୂର୍ଣ୍ଣାନନ୍ଦ ବିନ୍ଦୁ ସ୍ୱ ଓଁ ମ ଅଟନ୍ତି । ସେ ନିଜର ଅହେତୁକ କୃପା ବଳରେ ଗୁଣ ରାଶିକୁ ଆଶ୍ରୟ କରି ଅବ୍ୟକ୍ତରେ ବ୍ୟକ୍ତ ପରମାନନ୍ଦ ରୂପ ଧାରଣ ପୂର୍ବକ ଚରାଚର ଜଗତରେ ନିତ୍ୟ ବିରାଜମାନ ଅଛନ୍ତି ।

ଓଁ

ଅଗ୍ନି ସୋମ ବର୍ଣ୍ଣା ନୀଳାମ୍ବୁ ନୀଳା
ବନ୍ଧୁ ନାଦାମ୍ବିକା ପ୍ରସ୍ଥାଣ ଶିଳା ॥

+ + +

ଅଗ୍ନି ବର୍ଣ୍ଣା— ତେଜୋମୟ
ସୋମବର୍ଣ୍ଣା—ପ୍ରକାଶ ମୟ
ନୀଳାମ୍ବୁ ନୀଳା—ଘନ ନୀଳ ବର୍ଣ୍ଣ
ବନ୍ଧୁ ନାଦାମ୍ବିକା—ଅର୍ଦ୍ଧ ନାରୀଶ୍ୱର
ପ୍ରସ୍ଥାଣ ଶିଳା—ଶିବ ଲିଙ୍ଗ

ହେ ପରମାତ୍ମା ତୁମ୍ଭେ ଅଗ୍ନି ଓ ସୋମ ବର୍ଣ୍ଣ ଅଟ । ଅଧର୍ମର ପ୍ରାବଲ୍ୟରେ ଯୁଗ କ୍ଷୟ କାଳେ ତୁମ୍ଭର ଅଗ୍ନି ବର୍ଣ୍ଣ ଦୁରାତ୍ମା ମାନଙ୍କୁ ବିନାଶ କରେ । ପୁନଃ ତୁମ୍ଭର ସୋମ ବର୍ଣ୍ଣ ପୁଣ୍ୟ କାମୀ ସାଧୁମାନଙ୍କୁ ମହାନ ଭୟରୁ ଉଦ୍ଧାର କରେ । ତୁମ୍ଭର ଅନ୍ୟ ବର୍ଣ୍ଣ ଗାଢ ନୀଳ ବର୍ଣ୍ଣ ଏଥିରେ ଅଗ୍ନି ଓ ସୋମ ଲୀନ ରହନ୍ତି । ଏହି ନୀଳବର୍ଣ୍ଣ ତୁମ୍ଭର ଅସୀମତା, ଓ ସସୀମତାର ପରିଚାୟକ ଅଟେ । ପକ୍ଷାନ୍ତରେ ତୁମ୍ଭେ ପରମ ଶିବ (ବନ୍ଧୁ ନାଦାମ୍ବିକା) ସ୍ତ୍ରୀ ପୁଂ ପୂର୍ଣ୍ଣ ଯୋଗ ପୁରୁଷ ଅଟ । ତୁମ୍ଭର ଦର୍ଶନରେ ତଥା ନାମ ଶ୍ରବଣରେ ବା ଉଚ୍ଚାରଣରେ ପୁଣ୍ୟାତ୍ମା ମାନଙ୍କ ପୁଣ୍ୟ ପ୍ରସ୍ଥାଣ ଘଟେ ଅର୍ଥାତ୍ ମୁକ୍ତି ଲାଭ ହୁଏ ।

ଓଁ

**ସତ୍ୟ ଶିବାନନ୍ଦ ବନ୍ଧୁ ବିରୋଧ**
**ଜ୍ଞାନ ନେତ୍ରେ ରାମ ଓଁକାର ବୋଧ ॥**

\+ \+ \+

ସତ୍ୟ—ସନାତନ
ଶିବାନନ୍ଦ – ପରମାନନ୍ଦ
ବନ୍ଧୁ ବିରୋଧ—ମାୟାମୁକ୍ତ
ଜ୍ଞାନ ନେତ୍ର—ତୃତୀୟ ନେତ୍ର
ରାମ—ପୂର୍ଣ୍ଣାନନ୍ଦ ମୟ ପରମାତ୍ମା ।
ଓଁକାର ବୋଧ—ଓଁକାରର ଉପଲବ୍ଧି ।

ମହା ସତ୍ୟ ଲାଭ ଅର୍ଥାତ୍ ଆତ୍ମାର ସାକ୍ଷାତ୍ ଲାଭ ହେଲେ, ଶିବାନନ୍ଦ ଲାଭ ହୁଏ । ଏହା ନାଦ ଅର୍ଥାତ୍ ମାୟାମୁକ୍ତ ନୁହେଁ । ଏହି ମହାନ ତତ୍ତ୍ୱରେ ମାୟା ଲୟ ରହେ । ସତ୍ୟ ଅବିରୋଧ ବନ୍ଧୁ ଅଟେ । ଗୁରୁ କୃପାରେ ଦିବ୍ୟଚକ୍ଷୁ (ତୃତୀୟ ନେତ୍ର) ଲାଭ ହୁଏ । ଏହି ଜ୍ଞାନନେତ୍ର ପ୍ରାପ୍ତିରେ ରାମ ଓ ଓଁକାର ଯେ ଏକ ଅବିଚ୍ଛିନ୍ନ ତତ୍ତ୍ୱର ଅନ୍ତର୍ବର୍ତ୍ତୀ, ଏହା ଉପଲବ୍ଧ ହୋଇଥାଏ ।

ଓଁ

**ଶିବା ଶିବରାମ ଅବର୍ଣ୍ଣା ବର୍ଣ୍ଣ**
**ଯୋଗ ବର୍ଣ୍ଣା ବର୍ଣ୍ଣେ ଆଧାର କର୍ଣ୍ଣ ।**

+ + +

ଶିବା ଶିବ—ମହେଶ୍ୱର ଓ ମାହେଶ୍ୱରୀ

ରା—ପରମ ପ୍ରକୃତି

ମ—ପରମ ପୁରୁଷ

ଅବର୍ଣ୍ଣା ବର୍ଣ୍ଣ—ଯାହା ଅକ୍ଷର ବର୍ଣ୍ଣରେ ଯୁକ୍ତ

ଯୋଗ ବର୍ଣ୍ଣା—ଯୋଗ ବର୍ଣ୍ଣମୟ

ଆଧାର କର୍ଣ୍ଣ—କଳ୍ପ ଓ ବିକଳ୍ପ

ଶିବ ଓ ଶିବା (ପରମ ପୁରୁଷ ଓ ପରମ ପ୍ରକୃତି) ଉଭୟେ ତିନୋଟି ବର୍ଣ୍ଣର ସମାହାର ଅର୍ଥାତ୍ ଅବନା ବର୍ଣ୍ଣ ର+ଅ+ମ ବର୍ଣ୍ଣ ହୋଇ ଅଛନ୍ତି । ର ଓ ମ କୁ ଯେଉଁ ବର୍ଣ୍ଣାକ୍ଷର 'ଅ' ଯୋଗ କରେ ତାହା (ର+ମ) ସୃଷ୍ଟି ଓ ପ୍ରଳୟର ଯୋଗ ରେଖା ଅ; ବର୍ଣ୍ଣାକ୍ଷର ଅଟେ । ପ୍ରତି ବର୍ଣ୍ଣ ଏକ ପରମ ତତ୍ତ୍ୱର ବିଭିନ୍ନ ଗୁଣ ପର୍ଯ୍ୟାୟ ହେଲେ ମଧ୍ୟ, ବିକାଶ ଓ ବିନାଶରେ ଏକତ୍ୱ ମହତ୍ ତତ୍ତ୍ୱ ଅଟନ୍ତି । ଯୋଗ ବର୍ଣ୍ଣରେ ଏହା ସତ୍ ନାମରେ ବର୍ଣ୍ଣିତ ଓ ବିଯୋଗ ବର୍ଣ୍ଣରେ ଏହା ତତ୍ ରୂପେ ବର୍ଣ୍ଣିତ । ଏହା ହିଁ କଳ୍ପ ଓ ବିକଳ୍ପ ର କର୍ଣ୍ଣ ଅଟେ ।

ଓଁ

ତତ୍ତ୍ୱ ନିରଞ୍ଜନ ତାରକ ରାମ
ତତ୍ତ୍ୱ ନିରଞ୍ଜନ ସମ୍ପୂର୍ଣ୍ଣ କାମ ॥

+ + +

ତତ୍ତ୍ୱ ନିରଞ୍ଜନ— ଯାହାକୁ ପରମ ତତ୍ତ୍ୱ ଆଶ୍ରୟ କରିଅଛି ।
ତାରକ ରାମ—ସମ୍ପୂର୍ଣ୍ଣ ବିଶ୍ୱର କର୍ତ୍ତା ।
ତତ୍ତ୍ୱ ନିରଞ୍ଜନ— ଯେ ବ୍ୟକ୍ତ ଓ ଅବ୍ୟକ୍ତ ରୂପ
ସମ୍ପୂର୍ଣ୍ଣ କାମ—ଯେ ପୂର୍ଣ୍ଣ ନନ୍ଦ ମୟ ଅଟେ ।

ହେ ପରାତ୍ପର ପରମ ତତ୍ତ୍ୱ ନିରାଧାର ନିରଞ୍ଜନ । ତୁମ୍ଭେ ସମ୍ପୂର୍ଣ୍ଣ ବିଶ୍ୱର ଏକମାତ୍ର ତାରକ ତତ୍ତ୍ୱ-ଚିନ୍ତାମଣି ରାମ ଅଟ । ପୁନଃ ହେ ପରମ ତତ୍ତ୍ୱ! ତୁମ୍ଭେ ସମୁଦାୟ କ୍ଷର ଓ ଅକ୍ଷର ଜଗତର ପୂର୍ଣ୍ଣ କାମ (ପରିପୂରକ) ତତ୍ତ୍ୱ ଚିନ୍ତାମଣି ସଗୁଣ ବ୍ରହ୍ମ ଶ୍ରୀରାମ ଅଟ ।

ଓଁ

**କୃପା ଅହେତୁକ ସତ୍ୟ ବଳୟ**
**ମାୟା ପ୍ରସ୍ରବଣ ହଂସ ଆଳୟ ॥**

+ + +

କୃପା ଅହେତୁକ—ଯେ ନିଜ କୃପାରେ ନିଜେ ଚଳେ ।

ସତ୍ୟ ବଳୟ—ଅଖଣ୍ଡ ମଣ୍ଡଳାକାର

ମାୟା—ଅଷ୍ଟ ମାୟା

ପ୍ରସ୍ରବଣ —ଝରିତ ହୁଏ ।

ହଂସ ଆଳୟ—ପରମ ହଂସ ମାନଙ୍କର ଯେ ଆଳୟ ଅର୍ଥାତ୍ ନିବାସ ଅଟେ ।

ହେ କଲ୍ୟାଣ ମୟ ! ତୁମ୍ଭେ ତୁମ୍ଭର ଅହେତୁକ କୃପା-ବଳରେ ଅବ୍ୟକ୍ତ ରୁ ବ୍ୟକ୍ତ ହୋଇ ଏକ ପରମ ସତ୍ୟ ରୂପେ ବିରାଜମାନ କର । ପରମ ମାୟା ମହାଶକ୍ତି ତୁମ୍ଭଠାରୁ ହିଁ ଉଦ୍‌ଭବ ହୁଏ । ତୁମ୍ଭେ ତାହାର ଉପରେ ପରମ ହଂସ ରୂପ ଧାରଣ ପୂର୍ବକ ତତ୍‌ସତ୍ତ୍ୱ ଆକାର ଧାରଣ କରି ଥାଅ ।

ଓଁ

ଆଦି ଅନାଦିର ସଙ୍ଗମ ଗତି
ବ୍ରହ୍ମାକ୍ଷର କ୍ଷରେ ବାଢ଼ି ପ୍ରଣତି ॥

\+ \+ \+

ଆଦି---ସର୍ବ ପ୍ରଥମ ଉଦ୍‌ଭବ ଯା'ର
ଅନାଦି---ଆଦି ପୂର୍ବରୁ ଯେ ସନାତନ
ସଂଗମ ମତି---ସୃଷ୍ଟିରେ ଯାହାର ଇଚ୍ଛା
ପ୍ରକୃତି ଓ ପୁରୁଷର ଯୋଗ
ବ୍ରହ୍ମାକ୍ଷର ଓଁକାର---ପରମ
କ୍ଷରେ---ଜନ୍ମଲାଭ କରେ ।
ବାଢ଼ି ପ୍ରଣତି---ପ୍ରଣାମ କରି

ହେ ତତ୍ତ୍ୱ ନିରଞ୍ଜନ ! ତୁମ୍ଭେ ଆଦି ଓ ଅନାଦି ରୂପେ ଏକ ପରମ ତତ୍ତ୍ୱର ବିଭକ୍ତ ରୂପ ଧାରଣ ପୂର୍ବକ ସଚରାଚର ସୃଷ୍ଟିର ଉଦ୍‌ଭବ ପାଇଁ ମୂଢ଼ତଃ ସଙ୍ଗମ ମତି ଅଟ । ଏହି ତୁମ୍ଭର ଯୋଗନିଷ୍ଠା ଅକ୍ଷର ବ୍ରହ୍ମ ଉଦ୍‌ଭବର ପ୍ରଥମ ପର୍ଯ୍ୟାୟ ଅଟେ । ଏହିଠାରେ ପରମନାଦ ଭକ୍ତ ବନ୍ଦିଲା ହୋଇ ତୁମ୍ଭର ଦର୍ଶନ ଲାଭ କରିଥାଏ ।

ଓଁ

ଅକ୍ଷର ବ୍ରହ୍ମ ସେ ନାଦ ସୁନ୍ଦର
ଯାହା କୃପା ଭିକ୍ଷା ସଚରାଚର ॥

+ + +

ଅକ୍ଷର ବ୍ରହ୍ମ---ଓଁକାର ।
ନାଦ ସୁନ୍ଦର---ଅ+ଉ+ମ ଓଁ ଯେ ପରମ ସୁନ୍ଦର ଅଟେ ।
ଯାହା କୃପାଭିକ୍ଷା—ଯାହାର ଅହେତୁକ ଦୟାରେ ଚରାଚର—ସର ଓ ଅସର ଉଦ୍ଭବ ପ୍ରକୃତ ।

ତୁମ୍ଭେ ଅକ୍ଷର ବ୍ରହ୍ମ ଓଁକାର ରୂପ ଆହ୍ଲାଦମୟୀ ନାଦମୟୀ ମହାଶକ୍ତି ଅଟ । ତୁମ୍ଭର କୃପାରେ ହିଁ ଏହି ପରଦୃଶ୍ୟ ମାନ ଓ ଅପରଦୃଶ୍ୟମାନ ଉଦ୍ଭବ ଜଗତ ସତତ ଘୂର୍ଣ୍ଣାୟମାନ ହେଉଅଛି ।

ଓଁ

ଶ୍ରୁତି ଭୁବେ ତାର ନାମ ଓଁକାର
ଜ୍ଞାନ ସ୍ୱରବର୍ଗେ ଝଂକାର ଯାର ॥

\+ \+ \+

ଶ୍ରୁତି—ବେଦ
ଜ୍ଞାନସ୍ୱର ବର୍ଗ—ଋକ୍, ଯଜୁଃ, ସାମ ଓ ଅଥର୍ବ ।
ଝଂକାର—ଧର୍ମ, ଅର୍ଥ, କାମ ଓ ମୋକ୍ଷ ।

ପୁଣ୍ୟ ଜ୍ଞାନ ଭୂବରେ ତୁମ୍ଭର ନାମ ଓଁକାର ଅଟେ । ପବିତ୍ର ବେଦରେ ତୁମ୍ଭେ ଋକ୍, ଯଜୁଃ, ସାମ ଓ ଅଥର୍ବ ନାମଧେୟ ଜ୍ଞାନ ଚତୁଷ୍ଟୟରେ ବନ୍ଦିତ ଅଟ । ତୁମ୍ଭେ ପରମ କାରୁଣିକ ଧର୍ମ, ଅର୍ଥ କାମ ଓ ମୋକ୍ଷ ପ୍ରଦାନକାରୀ ପରମ ତତ୍ତ୍ୱ ରୂପ ଅଟ ।

ଓଁ

## ଜ୍ଞାତ ନୁହେଁ କେହି ନିଜ ଉପାୟେ
## ଶମ୍ଭୁ ଦୟା ବିନା ସାକ୍ଷାତ ପାଏ ॥

+ + +

ଜ୍ଞାତ ନୁହେଁ କେହି ନିଜ ଉପାୟେ = ନିଜ ଝଣୀ ବୁଦ୍ଧି ବଳରେ ଜ୍ଞାତ ହେବା ।
ଶମ୍ଭୁ = ଯେ ନିଜକୁ ନିଜେ ଜନ୍ମ କରିପାରେ ।
ଦୟାବିନା = କୃପା ବ୍ୟତୀତ ।
ସାକ୍ଷାତ ପାଏ = ପ୍ରତ୍ୟକ୍ଷୀଭୂତ କରେ ।

ହେ ପରମ ତତ୍ତ୍ୱମୟ ଓଁକାର ନାଦ-ବ୍ରହ୍ମ ! କେହି ହେଲେ ହେଁ ନିଜ ଉପାୟରେ ତୁମର କରୁଣା ବରୁଣାଳୟ ରୂପର ଦର୍ଶନ କରିପାରେ ନା । ହେ ପରମ କଲ୍ୟାଣମୟ ତୁମର ଅହେତୁକ କୃପା ବିନା ତୁମକୁ ଜ୍ଞାତ ହେବା କଦାପି ସମ୍ଭବ ନୁହେଁ ।

ଓଁ

**ରଟି ପାରିଲେ ସେ ଅଜପା ଜପ**
**ଜ୍ଞାନ ନେତ୍ରେ ଦିଶେ ଗୁଲ ପ୍ରଦୀପ ॥**

ରଟି ପାରିଲେ = ଜପି ପାରିଲେ ।
ଅଜପା ଜପ = ସୋ ଅହଂ, ଅହଂ ବ୍ରହ୍ମାସ୍ମି ।
ଜ୍ଞାନ ନେତ୍ର = ତୃତୀୟ ନେତ୍ର ।
ଗୁଲ ପ୍ରଦୀପ = ଚିଦାକାଶ, ଚୈତନ୍ୟାକାଶ ।

ଯେଉଁ ତତ୍ତ୍ୱ, ସୋ ଽ ହଂ, ସୋ ଽହଂ ସେ ମୁଁ ସେ ମୁଁ, ଏହି ନାଦରେ ଅନବରତ ପିଣ୍ଡ ରୂପୀ ବ୍ରହ୍ମାଣ୍ଡରେ ଯେଉଁ ସୃଜନ କ୍ରିୟାର ଅପରୂପ ମାଧୁର୍ଯ୍ୟ ଅନୁଭବ କରିଥାରେ ଅର୍ଥାତ୍ ପ୍ରତି ଶ୍ୱାସ, ପ୍ରଶ୍ୱାସ, କ୍ରିୟାରେ ଯେଉଁ ଅଜପା ଜପ ବା ଓଁ ମ ଉଚ୍ଚାରଣ ହେଉଅଛି, ଯେଉଁ ପୁଣ୍ୟ କାମୀ ତାହା ନିଶ୍ଚିତ ରୂପେ ସ୍ଥିର କରି ପାରେ; ତାହାର ହିଁ ଚିଦାକାଶର ଦର୍ଶନ ହୋଇଥାଏ ।

ଓଁ

**ମହାକାଳୀ ମହା କାଳର ମେଳା**
**ଜୀବ ପରମର ସୁରତ ଭେଳା ॥**

\+ \+

ମହାକାଳୀ = ପରମ ଶକ୍ତି । = 'ସ୍ଵ'
ମହାକାଳ = ପରମ ଶିବ । = 'ମ'
ମେଳା = ମିଳନ ।
ସୁରତ ଭେଳା = ପରମ ଆହ୍ଲାଦନ ସ୍ଥାନ, ସତ୍ୟ ଲୋକ ।

ଚୈତନ୍ୟ ଆକାଶ, ପରମ ପ୍ରକୃତି ଓ ପରମ ପୁରୁଷର ମିଳନ ସ୍ଥଳୀ ଅଟେ । ପକ୍ଷାନ୍ତରେ ଏହା ମହାପୀଠ ହିଁ ଗୁରୁଚକ୍ର ବା ଆଜ୍ଞାଚକ୍ର ହିଁ ଅଟେ । ମହାଶକ୍ତି ନାମ ପ୍ରବାହରେ ବହୁ ଗ୍ରନ୍ଥି ଅତିକ୍ରମ କରି ଏହି ତପ ଲୋକରେ ହିଁ ପରମ ଶିବ ଓ ଶିବାର ମିଳନାତ୍ମକ ପରମ ହଂସ ରୂପରେ ଲସ୍ଥ ହୋଇ ଯାଏ ।

ଓଁ

ମହାଧୂପ ଉଠେ ଚିଦାକାଶରେ
ଆନନ୍ଦ ଲହରୀ ପ୍ରେମ ପାଶରେ ॥

+ + +

ମହାଧୂପ = ମଙ୍ଗଳମୟଙ୍କ ମଙ୍ଗଳ ବିଭୂତି
ଉଠେ = ପ୍ରସ୍ଫୁମାନ ହୁଏ
ଚିଦାକାଶରେ = ଚୈତନ୍ୟ ଆକାଶରେ
ଆନନ୍ଦ ଲହରୀ = ଉଚ୍ଛ୍ୱସିତ ପରମାନନ୍ଦ
ପ୍ରେମ ବନ୍ଧନରେ = ପ୍ରେମ ପାଶରେ

ଚୈତନ୍ୟ ଆକାଶରେ (ଚିଦାକାଶରେ) ମଙ୍ଗଳମୟଙ୍କ ମଙ୍ଗଳ ବିଭୂତି ରୂପ ଉଚ୍ଛ୍ୱସିତ ପରମାନନ୍ଦ ପ୍ରେମ ବନ୍ଧନରେ (ହ୍ଲାଦିନୀ ଶକ୍ତିର ମାଧ୍ୟମରେ) ପ୍ରସ୍ଫୁମାନ ହୁଏ । ଯୋଗ ରୂପା ଯୋଗମାୟା, ମାୟା ତ୍ୟାଗ ପୂର୍ବକ ଆନନ୍ଦାଭିସାରରେ ଅବସ୍ଥାନ କରନ୍ତି । ମହାରାତ୍ରି ଉନ୍ମନୀର ବିଲୋପ ହୁଏ ।

ଓଁ

କଲ୍ପର ପ୍ରଳୟ କେତନ ଧରି
ଅତ ଉର୍ଦ୍ଧ୍ୱେ ଯାଏ ସୀମା ପ୍ରସରି ॥

\+ \+ \+

କଲ୍ପର ପ୍ରଳୟ = ବ୍ରହ୍ମଙ୍କର ଅହୋରାତ୍ର
କେତନ ଧରି = ଧ୍ୱଜା ଧାରଣ ପୂର୍ବକ
ଅତ ଉର୍ଦ୍ଧେ ଯାଏ = ତତ୍ତ୍ୱାଭ୍ୟନ୍ତରକୁ ପ୍ରବେଶ କରେ ।
ସୀମା ପ୍ରସରି = ବନ୍ଧନ ଅତିକ୍ରମ କରି

ବ୍ରହ୍ମାଙ୍କର ଅହୋରାତ୍ର(ବ୍ରହ୍ମ ଦିବସ = ମହାକଳ୍ପ) ଧ୍ୱଜ ଧାରଣ ପୂର୍ବକ (ବିଷୟ ବନ୍ଧନ ଯୋଗ ରାଶି ଅତିକ୍ରମଣ ପୂର୍ବକ ) ତତ୍ତ୍ୱାଭ୍ୟନ୍ତରକୁ ପ୍ରବେଶ କରେ ।

ଓଁ

**ମହାନାଦ ମିଶେ ମହା ଗଗନେ**
**ବ୍ୟାପ୍ତି ସରିଯାଏ ଗୁପତ ଶବ୍ଦେ ॥**

\+ \+ \+

ମହାନାଦ ମିଶେ = ଓଁକାର ଉଦୟ ହବେ
ମହାଗଗନେ = ଚିଦାକାଶରେ
ବ୍ୟାପ୍ତି ସରିଯାଏ = ସୃଷ୍ଟି ରଚନାତ୍ମିକା
(ବ୍ୟାପ୍ତି) ପରିସର ଲୟ ହୁଏ
ଚିଦାକାଶରେ = ଅବ୍ୟକ୍ତ ସ୍ତବରେ

ଚିଦାକାଶରେ ( ଚୈତନ୍ୟ ଆକାଶରେ ) ପରମନାଦ ଓଁକାର ଉଦୟ ହବେ । ତଦୁପରି ସୃଷ୍ଟି ରଚନାତ୍ମିକା (ବ୍ୟାପ୍ତି) ପରିସର ମଧ୍ୟ ଅବ୍ୟକ୍ତ ସ୍ତବରେ ଲୟ ଯାଏ । ବର୍ତ୍ତମାନ ସମ୍ପୂର୍ଣ୍ଣ ଜଗତ ପୂର୍ଣ୍ଣ ଚିଦାନନ୍ଦମୟ ଶବ୍ଦ ନାଦାତ୍ମିକା ଅଟେ । ଏହି ପରମ ରହସ୍ୟ ଉନ୍ମୋଚନ କରିବାର ଶକ୍ତି କାହାର ନାହିଁ । ଏହା କେବଳ ନିଜକୃତ ନଜେ (ସଙ୍ଗ)ତତ୍ତ୍ୱ ଯୁକ୍ତ ହୁଏ ।

ଓଁ

ଆତ୍ମାରାମ ରମେ ଆତ୍ମାରାମରେ
ମନବଚନର ସେ ପର ପାରେ ॥

+ + +

ଆତ୍ମାରାମ—ଏକ ଅବ୍ୟକ୍ତ ସତ୍ତା ।
ରମେ—ରମଣ କରେ ।
ଆତ୍ମାରାମରେ—ଏକ ବ୍ୟକ୍ତ ସତ୍ତାରେ ।
ମନ—ମାନସ କ୍ରିୟା ।
ବଚନ—ବାକ୍ କ୍ରିୟା ।
ସେ ପର ପାରେ—ଅଜ୍ଞାଦ୍ଭୂତାରେ ।

ଏକ ଅବ୍ୟକ୍ତ ସତ୍ତା, ଏକ ବ୍ୟକ୍ତ ସତ୍ତା ଉପରେ ରମଣ କରେ ଯାହାକୁ, ମାନସ କ୍ରିୟା ଓ ବାକ୍ କ୍ରିୟା ପରପାରେ ଏକ ଅଜ୍ଞାଦ୍ଭୂ ବାଦ । ତତ୍ତ୍ୱ ତତ୍ତ୍ୱାଭିମୁଖୀ ସର୍ବଜ୍ଞ ପରିପୂର୍ଣ୍ଣ ଯୋଗ ନେଇ ବ୍ୟତୀତ ଆତ୍ମାରାମର ରମଣ କ୍ରିୟା ଉପଲବ୍ଧ ହୋଇପାରେ ନା ।

ଓଁ

ତତ୍ତ୍ୱ ନିରଞ୍ଜନ ସେ ଆତ୍ମାରାମ
ଦୃଶ୍ୟାଦୃଶ୍ୟ ସର୍ବ ସେ ପୂର୍ଣ୍ଣକାମ ॥

+ + +

ତତ୍ତ୍ୱ ନିରଞ୍ଜନ—ଆଧାର ଶୂନ୍ୟ ମହତ୍ ତତ୍ତ୍ୱ ।
ସେ ଆତ୍ମାରାମ— ଆଧାରଭୂତ ମହତ୍ ତତ୍ତ୍ୱ ।
ଦୃଶ୍ୟାଦୃଶ୍ୟ — ପରିଦୃଶ୍ୟମାନ ଓ ଅପର
ଦୃଶ୍ୟମାନ ଜଗତ୍ ।
ସର୍ବ—ଶିବ ।
ପୂର୍ଣ୍ଣକାମ—ଯେ କାମନା ଶୂନ୍ୟ ଅର୍ଥାତ୍ ସମସ୍ତ
କାମନା ଯାହାର ଶରୀରର ଲୟ ଯାଏ ।

ଯେ ଆଧାର ଶୂନ୍ୟ ମହତ୍ ତତ୍ତ୍ୱ,ସେହି ଆଧାରଭୂତ
ମହତ୍ ତତ୍ତ୍ୱ ଅଟେ । ସେ ପରିଦୃଶ୍ୟମାନ ଓ ଅପର
ଦୃଶ୍ୟମାନ ଉଭୟ ଜଗତ୍ । ଯେ କାମନା ଶୂନ୍ୟ
ଅର୍ଥାତ୍ ସମସ୍ତ କାମନା ଯାହାର ଶରୀରରେ ଲୟ ଥାଏ
ସେହି ଶିବ ପରମ କଲ୍ୟାଣମୟ ।

ଓଁ

ସତ୍ତାନାହିଁ କାହିଁ ନ ରମେ ଯହିଁ
ତତ୍ତ୍ୱ ବାରି ବିନ୍ଦୁ ଦଳେ ଢଳଇ ॥

\+ \+ \+

ସତ୍ତ୍ୱ ନାହିଁ କାହିଁ ନ ରମେ ଯହିଁ—ଅନନ୍ତ ବିଶ୍ୱରେ
ଯାର ସତ୍ତ୍ୱ ସର୍ବତ୍ର ବିଦ୍ୟମାନ ।
ତତ୍ତ୍ୱ ବାରି ବିନ୍ଦୁ—ସେ ମୃତ୍ୟୁ ପ୍ରାଣ ସ୍ୱାମୀ ।
ଦଳେ ନ ଢଳଇ—ମାୟା ସଙ୍ଗରେ ଯାର ଯୁକ୍ତ
ପଦ୍ମପତ୍ର ଉପରେ ନୀର ବିନ୍ଦୁ ସଦୃଶ ।

ଅନନ୍ତ ବିଶ୍ୱରେ ଯାର ସତ୍ତ୍ୱ ସର୍ବତ୍ର (ସଦା)ବିଦ୍ୟମାନ ସେ ସତ୍ୟ ପ୍ରାଣ ସ୍ୱାମୀ । ମାୟା ସଙ୍ଗରେ ସେ ଯୁକ୍ତ ଅର୍ଥାତ୍ ପଦ୍ମ ପତ୍ରରେ ଜଳ ବିନ୍ଦୁ ସଦୃଶ ଯା'ର ସ୍ଥିତି ସେହି ପରମ ତତ୍ତ୍ୱ ଅଟେ ।

ଓଁ

ନିର୍ଲେପ ବିଲେପି ଥାଏ ଗହନେ
ବିଦ୍ୟାବଳେ ହେରି ହୁଏ ସେ ଧନେ ॥

+ + +

ନିର୍ଲେପ—ନିର୍ଲିପ୍ତତା ।
ବିଲେପି— ବିଲେପିତ ।
ଥାଏ ଗହନେ—ଯୋଗୀ ଚକ୍ଷୁର ଅନ୍ତରାଳରେ ।
ବିଦ୍ୟାବଳେ—ଆଧ୍ୟାତ୍ମ ବିଦ୍ୟାର ଆଧାରରେ ।
ହେରି – ସଂଦର୍ଶନ କରି ।
ହୁଏ ସେ ଧନେ—ସେହି ପରମ ତତ୍ତ୍ୱକୁ ।

ଯୋଗୀ ଚକ୍ଷୁର ଅନ୍ତରାଳରେ ଯେ ସତତ ବିଲେପିତ ଥାଏ, ପୁନଃ ଗୁହ୍ୟରେ ଯେ ଗୃହ୍ୟ; ନିର୍ଲେପ ନିରଞ୍ଜନ ସେହି ପରମ ତତ୍ତ୍ୱକୁ; ଆଧ୍ୟାତ୍ମ ବିଦ୍ୟାର ଆଧାରରେ ସଂଦର୍ଶନ କରି ହୁଏ ।

ଓଁ

**ଯୋଗ ଚିନ୍ତାମଣି ସେ ଚିନ୍ତାମଣି**
**ହେଜି ନ ପାରଇ ସହସ୍ର ଫଣୀ ॥**

+ + +

ଯୋଗ ଚିନ୍ତାମଣି – ଯୋଗବଳେ ଯାହା ଲବ୍ଧ ହୁଏ ।
ସେ ଚିନ୍ତାମଣି—ଯୋଗୀମାନଙ୍କ ଚିନ୍ତାର ବିଷୟ
ହେଜି ନ ପାରଇ—ଠିକ୍ କରିପାରେ ନା ।
ସହସ୍ର ଫଣୀ—ଅନନ୍ତ ନାଗ ।

ଦୁର୍ଲଭ ଜନ୍ମ । ଯୋଗୀମାନଙ୍କ ସତତ ଚିନ୍ତାର ବିଷୟ ଯେଉଁ 'ଯୋଗ ଚିନ୍ତାମଣି', ଯାହାକୁ ପରମ ଯୋଗ ବଳରେ ମହାସତ୍ୟ ରୂପେ ପ୍ରସ୍ଫୁଟମାନ କରିପାଏ; ତାର ଅନ୍ତିମ ରହସ୍ୟ ସହସ୍ର ଫେଣ ଯୁକ୍ତ ଉକାର ରୂପ ଅନନ୍ତ ନାଗ ମଧ୍ୟ ବ୍ୟାଖ୍ୟାନରେ ପରିସ୍ଫୁଟମୁଖ ଅଟେ ।

ଓଁ

ଜ୍ଞାନ ଜ୍ଞାନଗମ୍ୟ ଜ୍ଞାତା ସେ ନିଜେ
ନିଜ କୃପା ବଳେ ନିଜେ ବିରାଜେ ॥

+ + +

ଜ୍ଞାନ—ମହତ୍ ତତ୍ତ୍ୱ ।
ଜ୍ଞାନଗମ୍ୟ—ଯାହାକୁ ଜାଣି ହୁଏ ।
ଜ୍ଞାତା—ଯେ ପୂର୍ବ ଭାବରେ ଜାଣେ ।
ସେ ନିଜେ—ପରାତ୍ପର ପରମାତ୍ମା ।
ନିଜ କୃପାବଳେ — ନିଜର ଅହେତୁକ କୃପା ବଳରେ ।
ନିଜେ ବିରାଜେ—ସ୍ୱ ବିରାଜମାନ ହେବାର ।

ଯେ ନିଜେ ମହତ୍ ତତ୍ତ୍ୱ । ଯେ ନିଜକୁ ନିଜେ ପୂର୍ଣ୍ଣରୂପେ ଜାଣେ । ପୁନଃ ଯେ ଅନ୍ତର୍ଯ୍ୟାମୀ ପୁରୁଷାକାର ପରାତ୍ପର ପରମାତ୍ମା । ସେ ନିଜର ଅହେତୁକ କୃପାବଳରେ ନିଜକୁ ନିଜେ ଦେଦୀପ୍ୟମାନ କରଏ ।

ଓଁ

## ପର୍ ଅପର୍‌ରେ ପୁରୁଷୋତ୍ତମ
## କ୍ଷର, ଅକ୍ଷରର ଧାମ ଉତ୍ତମ ॥

\+ \+ \+

ପର = ଚେତନମୟୀ ପ୍ରକୃତି

ଅପର = ଜଡ଼ ପ୍ରକୃତି

ପୁରୁଷୋତ୍ତମ = ଅପର ଓ ପର ମୂର୍ତ୍ତି ମାଝାରେ ଯେଉଁ ମହତ୍ ପ୍ରକୃତିରେ ଆଧାରଭୂତ ।

ପ୍ରକୃତି ମୁଖ୍ୟତଃ ତିନୋଟି ପର୍ଯ୍ୟାୟରେ ସ୍ୱୀକୃତ ହୋଇଅଛି । ଅପର ପ୍ରକୃତି ( ଅଚେତନ) ପର ପ୍ରକୃତି (ଚେତନମୟୀ) ଓ ପୁରୁଷୋତ୍ତମ ସତ୍ତା । ଅପର୍ ପରରେ ପର୍ଯ୍ୟବସିତ ଓ ପର ଉତ୍ତମ ପୁରୁଷରେ ପର୍ଯ୍ୟବସିତ ଥାଏ । ସର୍ବ ଧାରକ ଧର୍ମ । ଏହା ଚିଦାନନ୍ଦ ମୟ ଅଟେ । ତଦୁପରି ପୁରୁଷ ମଧ୍ୟ ତିନୋଟି ପର୍ଯ୍ୟାୟରେ ବିଦ୍ୟମାନ । କ୍ଷର, ଯାର ଲୟ ସମ୍ଭବ । ଅକ୍ଷର ଯେ ସୂକ୍ଷ୍ମ ଓ ସନାତନ ଜଡ଼ିତ ଓ ଉତ୍ତମ ଯେ ପରମ ତତ୍ତ୍ୱ । ଅକ୍ଷର କ୍ଷରରେ ପର୍ଯ୍ୟବସିତ ପୁନଃ କ୍ଷର ଉତ୍ତମାଧାର ଭୂତ ଅଟେ । ଏହି ଉତ୍ତମ ହିଁ ପୂର୍ଣ୍ଣାନନ୍ଦ ବିନ୍ଦୁ ।

ଓଁ

**ମାତ୍ରା ଗ୍ରମ ବହେ ବେଦ ଅଙ୍ଗରେ**
**ଧରମ ସେ କହି ନିଜ ରଙ୍ଗରେ ॥**

\+ \+ \+

ମାତ୍ରା ଗ୍ରମ ବହେ = ଗ ଓ ମ କୁ ଯେଉଁ ଓଜ ବହନ କରେ ।
ବେଦ ଅଙ୍ଗରେ = ଜ୍ଞାନ ଶରୀରରେ ।
ଧରମ = ମ କୁ ଯେ ଧରି ରଖେ । ଅନନ୍ତ ସତ୍ତା ଯେଉଁଠି ଆଧାରୀଭୂତ ।
ସେ କହି = ବ୍ରହ୍ମ ନାଦ ଓଁକାର, ବା ଆତ୍ମନାଦ
ନିଜ ରଙ୍ଗରେ = ସ୍ୱ ଅଭିଳାଷରେ ବା ନିଜର ବିଳାସରେ ।

ବ୍ରହ୍ମନାଦ ଓଁକାର ବା ଆତ୍ମନାଦ ଗ୍ରମକୁ ଜ୍ଞାନ ରୂପ ଶରୀରରେ ଯେଉଁ ପରମ ଓଜ ବହନ କରେ ସେ ଅନନ୍ତ ଓ ଅସୀମ, ନିଜର ସ୍ୱ ଅଭିଳାଷରେ ବା ନିଜର ପରମ ବିଳାସରେ ଯେ ନିଜ କୃତ ନିଜେ, ବିକାଶ-ମାନ ରହେ, ସେହି ତତ୍ତ୍ୱାନନ୍ଦ ପରମଧର୍ମ ଅଟେ ।

ଓଁ

**ଯୋଗୀ ଜନ ମନ ଅମୂଲ୍ୟ ମଣି**
**ପର ପରକାଶେ ନୁହଁଇ ଗଣି ॥**

+ + +

ଯୋଗୀ ଜନମନ— ଚିତ୍ତ ବୃତ୍ତିର ନିରୋଧ । କଠୋର ତପସ୍ୟାରେ ଯେଉଁ ମନ କୁଶାଗ୍ର ବୁଦ୍ଧିକୁ ବିବେକାଭିମୁଖୀ କରେ ।

ଅମୂଲ୍ୟମଣି—ଅଖଣ୍ଡ ସଚ୍ଚିଦାନନ୍ଦ ଘନ ।

ପର ପରକାଶେ—ଯା'ଉପରେ ଅନ୍ୟର ପ୍ରକାଶ ନାହିଁ ଅର୍ଥାତ୍ ଯାର ନିଜର ପ୍ରକାଶ ସ୍ୱୀକୃତ । ତଥାପି ସେ ଅନ୍ୟ ଦ୍ୱାରା ପ୍ରକାଶ ହୋଇ ପାରେନା ।

ନୁହଇ ଗଣି — କେବଳ ଅନୁଭୂତି ସାପେକ୍ଷ ଠିକ୍ କରିବା ।

କଠୋର ତପସ୍ୟା ଦ୍ୱାରା ଯେଉଁ ମନ କୁଶାଗ୍ର ବୁଦ୍ଧିକୁ ବିବେକାଭିମୁଖୀ କରେ ଅର୍ଥାତ୍ ଚିତ୍ତବୃତ୍ତିର ନିରୋଧ ଦ୍ୱାରା ଯେଉଁ ଅମୂଲ୍ୟ ମଣି ଅଖଣ୍ଡ ସଚ୍ଚିଦାନନ୍ଦ ଘନର ଲାଭ ହୁଏ । ତଦୁପରି ଯେଉଁ ମହାମଣିର ସ୍ୱ ପ୍ରକାଶ ବିଦ୍ୟମାନ ଅଛି, ତାହାକୁ ଅନ୍ୟର ପ୍ରକାଶ ଦ୍ୱାରା ଜାଣି ହୁଏ ନା । ସେହି ଉତ୍ତମ ବସ୍ତୁ କେବଳ ମାତ୍ର ଅନୁଭୂତି ସାପେକ୍ଷ ଅଟେ ।

ଓଁ

**ହୃଦାକାଶେ ଯେବେ ଭକତି ଲୁଟେ**
**ଆଉତି ହୁଏ ସେ ପୀରତି ପୁଟେ ॥**

\+ \+ \+

ହୃଦାକାଶେ—ହୃଦୟ ଆକାଶରେ
ଯେବେ—ଯେତେବେଳେ
ଭକତି ଲୁଟେ—ଭକ୍ତିର ଉଦୟ ହୁଏ ।
ସତ୍ୟ ପ୍ରାପ୍ତିରେ ଅନୁରାଗ ଜନ୍ମେ ।
ଆଉତି ହୁଏ ସେ — ସତ୍, ଚିତ୍ ଆନନ୍ଦର
ଘନୀଭୂତ ଅବସ୍ଥା ।
ପୀରତି ପୁଟେ—ଜ୍ୟୋତିର୍ମୟ ହୋଇଯାଏ

ହୃଦୟ ଆକାଶରେ ଯେତେବେଳେ ସତ୍ୟପ୍ରତି ଅନୁରାଗ ଜନ୍ମେ । ତଦ୍‌ଗତ ଭକ୍ତିର ଉଦୟ ହୁଏ । ପ୍ରଭୁ ପଦାରବିନ୍ଦ ଧ୍ୟାନରେ ଚିତ୍ତବୃତ୍ତି ସ୍ଥିର ହୁଏ । ସେତେବେଳେ ସତ୍‌ଚିତ୍ ଆନନ୍ଦର ଘନୀଭୂତ ଅବସ୍ଥା ଉପଲବ୍ଧ ହୁଏ । ଏହା ପରମ ଜ୍ୟୋତିର୍ମୟ ବିନ୍ଦୁ ନାଦାତ୍ମିକା ଆତ୍ମଜ୍ୟୋତି ହିଁ ଅଟେ ।

ଓଁ

## କର୍ମ ଅଭିମାନ ଗଲେଟି ତୁଟି
## କରମ ଯାନରେ ଆସେ ଉକୁଟି ॥

\+ \+ \+

କର୍ମ ଅଭିମାନ ଗଲେଟି ତୁଟି = ମହାଭୂତ ଅହଂକାର ଲୟ ଗଲେ (ତତ୍ତ୍ୱରେ ଲୀନ ଗଲେ) କରମ ଯାନରେ = କର୍ମ ସନ୍ୟାସ ଯୋଗର ଆଶ୍ରୟରେ ଅର୍ଥାତ୍ ନିଷ୍କାମ କର୍ମ ଯୋଗରେ ଆସେ ଉକୁଟି = (ମହତ୍ ତତ୍ତ୍ୱ) ଜ୍ଞାନାଲୋକର ପ୍ରକାଶ ହୁଏ ।

ସତ୍ କର୍ମ ମାନଙ୍କର ଅନୁଷ୍ଠାନ ଦ୍ୱାରା କର୍ମ ସନ୍ୟାସ ଯୋଗରେ ଅର୍ଥାତ୍ ନିଷ୍କାମ କର୍ମ ଯୋଗରେ ଆଶ୍ରୟ ମିଳେ । ଏତ୍ଦ୍ୱାରା ପରମ ଭୂତ ଅହଂକାରର ଲୟ ହୁଏ ଏବଂ ମହତ୍ ତତ୍ତ୍ୱ; ପରମ ଜ୍ଞାନ ଲୋକର ପ୍ରକାଶ ହୁଏ । ଚୈତନ୍ୟ ଆକାଶର ଉଦୟ ସଙ୍ଗେ ସଙ୍ଗେ ଜନ୍ମ ଜନ୍ମାନ୍ତର କର୍ମାଭିମାନ ଦୋଷ କ୍ଷୟ ହୁଏ ଯୋଗୀ ଜ୍ୟୋତିର୍ମୟ ହୋଇଯାଏ ।

ଓଁ

ଅବା ଜ୍ଞାନ ରଥେ ଦାଶଇ ତୋର୍
ପରମ ତା ନାମ ଶୋଭା ପସର୍ ॥

+ + +

ଅବା ଜ୍ଞାନ ରଥେ ଦାଶଇ ତୋର = ଜ୍ଞାନଲୋକରେ ଦେଦୀପ୍ୟମାନ ହେବା ଅର୍ଥାତ୍ ପରମ ସତ୍ୟର ସନ୍ଧାନ ଲଭ

ପରମ ତା ନାମ = ଅନନ୍ତ କୋଟି ବିଶ୍ୱ ବ୍ରହ୍ମାଣ୍ଡ ଯାହାକୁ ଆଶ୍ରୟ କରି ଅଛନ୍ତି ।

ଶୋଭା ପସର = ଯେ ପୂର୍ଣ୍ଣାନନ୍ଦ

ଅନନ୍ତ କୋଟି ବିଶ୍ୱ ବ୍ରହ୍ମାଣ୍ଡ ଯାହାକୁ ଆଶ୍ରୟ କରି ଅଛନ୍ତି । ଯେ ବିଶ୍ୱସ୍ରଷ୍ଟା ପୂର୍ଣ୍ଣାନନ୍ଦ ବ୍ରହ୍ମ; ଜ୍ଞାନାଲୋକରେ ମହାସତ୍ୟ ରୂପେ ଯା'ର ସନ୍ଧାନ ଲଭ ହୁଏ । ତାହାର ଅନୁପମ ନାମ ହିଁ ପରମ ଅଟେ ।

ଓଁ

**ଗୋଲକ ମଣ୍ଡଳ ବଚନ୍ଦ ଭାନୁ**
**ହୃଦେ ଉଦେ ହୁଏ ମହତ ଭାନୁ ॥**

\+ \+ \+

ଗୋଲକ ମଣ୍ଡଳ = ଜ୍ଞାନାଲୋକ ମଣ୍ଡଳ, ସତ୍ୟ ଲୋକ (ସହସ୍ରାର ଚକ୍ର)
ବଚନ୍ଦ ଭାନୁ = ଯେଉଁଠାରୁ ବ୍ରହ୍ମନାଦର ଉତ୍ପତ୍ତି ଅର୍ଥାତ୍ ଓଁକାର ଆଗମନ
ହୃଦେ ଉଦେ ହୁଏ = ଯାହାର ଲୟରେ ପୂର୍ଣ୍ଣ ଚୈତନ୍ୟ
ମହତ ଭାନୁ = ଚନ୍ଦ୍ରର ପ୍ରକାଶ ଘଟେ ।

ସତ୍ୟଲୋକର ଅନ୍ୟନାମ ଜ୍ଞାନ ଲୋକ ମଣ୍ଡଳ ଏହାକୁ ସହସ୍ରାର ଚକ୍ର ମଧ୍ୟ କୁହାଯାଏ । ଏହି ଅବଶେଷ ମହାଚକ୍ରରୁ ଯେଉଁ ପରମ ବ୍ରହ୍ମନାଦ ନିର୍ଗତ ହୁଏ ଅର୍ଥାତ୍ ବୀଜାକ୍ଷର ଓଁକାରର ଆଗମନ ହୁଏ ସର୍ବୋପରି ଯାହାର ଲୟରେ ପୂର୍ଣ୍ଣ ଚୈତନ୍ୟ ଚନ୍ଦ୍ରର ପ୍ରକାଶ ଘଟେ ପଶ୍ଚାତ୍ତରେ ଯାହା ଲୟ କଲେ ହୃଦୟାକାଶରେ ମହତ୍ ଭାନୁର ଉଦୟ ହୁଏ; ତାହାହିଁ ପରିପୂର୍ଣ୍ଣ ଜ୍ଞାନ ଅଟେ ।

ଓଁ

**ନିଜ ପରକାଶେ ନିଜେ ଉଜ୍ଜ୍ୱଳ**
**ଚରାଚରେ ଦିଏ ପ୍ରକାଶ ଢ଼ାଳି ।।**

\+ + +

ନିଜ ପରକାଶେ—ଯାହାର ସ୍ୱ ପ୍ରକାଶ ଅଛି
ନିଜେ ଉଜ୍ଜ୍ୱଳ—ନିଜ ଜ୍ଞାନରେ ଯେ ନିଜେ ଭରପୂର
ଯାହାକୁ କେହି ଜାଣି ପାରନ୍ତି ନାହିଁ ନିଜର ଅହେତୁକ କୃପା ବଳରେ ମୁଁ ଯେ ପରମ ସତ୍ୟ ବୋଲି ଯେ ପ୍ରଜ୍ଞାପ୍ତ ମାନ କରାଏ ।
ଚରାଚରରେ—ବ୍ୟକ୍ତ ଓ ଅବ୍ୟକ୍ତରେ ଯେ ପ୍ରକାଶ ମାନ ହୁଏ ।

ନିଜର ପ୍ରକାଶରେ ଯେ ନିଜେ ପ୍ରକାଶ ମାନ ଅର୍ଥାତ୍ ନିଜ ଜ୍ଞାନରେ ଯେ ନିଜେ ଭରପୁର, ଯାହାକୁ କେହି ଜାଣିବାକୁ ସମର୍ଥ ନୁହନ୍ତି ସେହି ମହତ୍ ତତ୍ତ୍ୱ ନିଜର ଅହେତୁକ କୃପା ବଳରେ ଚରାଚର ଜଗତରେ ଏକ ଅଭ୍ରାନ୍ତ ସତ୍ୟ ରୂପେ ଜାଜ୍ୱଲ୍ୟମାନ ରହି ଚରାଚର ଜଗତକୁ ପରମ ପ୍ରକାଶ ପ୍ରଦାନ କରନ୍ତି ।

ଓଁ

## ସ୍ଥୂଳରେ ସ୍ଥୂଳ ଏ ଅତି ଗରିମା
## ଲଘୁ ଲଘୁତାର ଚରମା ସୀମା ।

\+ \+ \+

ସ୍ଥୂଳରେ ସ୍ଥୂଳ ଏ = ସ୍ଥୂଳତାର ସଙ୍କଳ୍ପ, କଳ୍ପନା
ଯେ ପର୍ଯ୍ୟନ୍ତ ନେଇ ପାରେ ତାର ପରପାରେ
ଅତି ଗରିମା = ଅତି ଗରିଷ୍ଠ
ଲଘୁ ଲଘୁତାର = ସୂକ୍ଷ୍ମତାର ସଙ୍କଳ୍ପ, କଳ୍ପନା
ଯେ ପର୍ଯ୍ୟନ୍ତ ନେଇ ପାରେ
ଚରମ ସୀମା—ଅବେଶେଷ ମାତ୍ର

ଯେ ପରମ ମହାସ୍ଥାନ । ସ୍ଥୂଳରେ ଯେ ଅତି ସ୍ଥୂଳ ପୁନଃ ସୂକ୍ଷ୍ମରେ ଯେ ଅତି ସୂକ୍ଷ୍ମ, ମନୋମୟ କୋଷ ଯାର ପରିଧି ଲଙ୍ଘନ କରି ପାରେ ନା, ଅର୍ଥାତ୍ ସ୍ଥୂଳ ଓ ସୂକ୍ଷ୍ମର ବର୍ଣ୍ଣନା ଯେଉଁଠାରେ ସୀମିତ ହୋଇଯାଏ । ସର୍ବୋପରି ଯେ ପରମ ଗମ୍ୟସ୍ଥାନ ତଥା ପରମ ଲଘୁ ସେହି ପରମ ସତ୍ୟ ଯାର ପ୍ରକାଶ କେବଳ ଚିଦାନନ୍ଦମୟ ଅଟେ ।

ଓଁ

**ନିରାଧାର ନୀର ଆଧାର ବିନ୍ଦୁ**
**ଗୋପନ ଗୁହାର ଚମକ ଇନ୍ଦୁ ।**

\+ \+ \+

ନିରାଧାର—ଯେ କୌଣସି ଆଧାର ଦ୍ୱାରା ସ୍ଥିରକୃତ ନୁହେଁ ।
ନୀର ଆଧାର—ଯେ ପୂର୍ଣ୍ଣ ରସମୟ
ବିନ୍ଦୁ—ଅଖିଳ ବିଶ୍ୱ ବ୍ରହ୍ମାଣ୍ଡ
ଗୋପନ ଗୁହାର—ଯେ କୂଟସ୍ଥ
ଚମକ—ଯାହାକୁ ଆଶ୍ଚର୍ଯ୍ୟ ଛୁଇଁ ପାରେନା
ଯେ ଶାନ୍ତାକାର ଅଟେ ।

ଯେଉଁ ମହତ ସତ୍ତ୍ୱ କୌଣସି ଆଧାର ଦ୍ୱାରା ସ୍ଥିରୀକୃତ ନୁହେଁ । ଯେ ପୂର୍ଣ୍ଣାନନ୍ଦ ପୂର୍ଣ୍ଣ ଆନନ୍ଦ ରସମୟ ଅଖିଳ ବିଶ୍ୱ ବ୍ରହ୍ମାଣ୍ଡ ରୂପକ ସନାତନ ବିନ୍ଦୁ । ଯେ କୂଟସ୍ଥ ବ୍ରହ୍ମ ଆଶ୍ଚର୍ଯ୍ୟ ଯାହାକୁ ସ୍ପର୍ଶ କରିପାରେ ନା, ଯେ ପୂର୍ଣ୍ଣ ଶାନ୍ତାକାର ଅଟେ, ସେହିଁ ପରମାନନ୍ଦ ରୂପ ସତ୍ୟ ଅଟେ ।

ଓଁ

**ନିରାକାର ନିରଞ୍ଜନ ଅଲେଖ**
**ସତ୍ୟ ସନାତନ ସ୍ୱୟଂଭୂ ରେଖ ॥**

\+ \+ \+

ନିରାକାର—ଯେ ରୂପରେଖ ବିହୀନ
ନିରଞ୍ଜନ—ଯେ କେବଳ ଚୈତନ୍ୟ ମୟ
ଅଲେଖ—ଆଦ୍ୟ ଶକ୍ତି ଯାର ଶରୀରରୁ ଉଦ୍‌ଭବ ହୁଏ
ସତ୍ୟ—ଯାର ସତ୍ତା ସର୍ବତ୍ର ଉପଲବ୍‌ଧ
ସନାତନ=ଯେ ନିତ୍ୟ ଆନନ୍ଦ ମୟ
ସ୍ୱୟଂଭୂ —ଯେ ନିଜକୁ ନିଜେ ଅହେତୁକ କୃପାରେ ଜନ୍ମ ହୁଏ
ରେଖ— ଯେଉଁ ରେଖାରେ ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି

ଯେଉଁ ମହତ ତତ୍ତ୍ୱ, ରୂପ ଓ ରେଖା ଦ୍ୱାରା ଚିହ୍ନିତ ନୁହେଁ । ଯେ କେବଳ ପରମ ଚୈତନ୍ୟମୟ । ଆଦ୍ୟଶକ୍ତି ଯାହାର ଶରୀରରୁ ଉଦ୍‌ଭବ । ଯେ ସର୍ବତ୍ର ସତ୍ୟ ରୂପେ ଉପଲବ୍‌ଧ । ଯାର ଅନ୍ୟନାମ ନିତ୍ୟାନନ୍ଦ ପୁନଃ ଯେ ନିଜକୁ ନିଜେ ଅହେତୁକ କୃପାରେ ଜନ୍ମ ହୁଏ । ଯା'ର ସଂକଳ୍ପ ସ୍ୱରରେ ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି ସେହି ପରମ ସତ୍ୟ ଅଟେ ।

ଓଁ

ଜ୍ଞାନ ଗ୍ରନ୍ଥେ ଗୁଣାତୀତ ସେ କହି
ଜ୍ଞାନ ଗ୍ରନ୍ଥି ଫାଟି ଗଲେ ସେ ପାଇ ॥

\+ + +

ଜ୍ଞାନଗ୍ରନ୍ଥେ = ଜ୍ଞାନାଲୋକରେ
ଗୁଣାତୀତ ସେ କହି—ଯେ ସବୁ ଗୁଣକୁ ଅତିକ୍ରମ
କରିଅଛି ଅର୍ଥାତ୍ ଗୁଣତ୍ରୟ ସତ୍ତ୍ୱ, ରଜ, ତମ
ଯା ଦେହରେ ଲୟ ଯାଆନ୍ତି ।
ଜ୍ଞାନଗ୍ରନ୍ଥି = ବ୍ରହ୍ମରନ୍ଧ୍ର
ଫାଟିଗଲେ = ଖୋଲି ଗଲେ
ସେ ପାଇ—ଲାଭ ହୁଏ

ଜ୍ଞାନାଲୋକରେ ଯେ ଗୁଣାତୀତ ନାମରେ କଥିତ ହୁଏ ଅର୍ଥାତ୍ ଗୁଣତ୍ରୟ ସତ୍ତ୍ୱ, ରଜ ଓ ତମ ଯାହାର ଶରୀରରେ ଲୟ ହୋଇ ଯାଆନ୍ତି । ବ୍ରହ୍ମରନ୍ଧ୍ରର ଉନ୍ମୋଚନ ବ୍ୟତୀତ ଯାହାର ସାକ୍ଷାତ୍ ଲାଭ ହୁଏନା ସେହି ପରମ ସତ୍ୟ ଅଟେ ।

ଓଁ

**ସର୍ବ ଲୋକ ମହେଶ୍ୱର ଈଶ୍ୱର**
**ଏକ ତେଜ ବିନ୍ଦୁ ମହା ଈଶ୍ୱର ॥**

\+ + +

ସର୍ବ ଲୋକ ମହେଶ୍ୱର = ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ।
ବ୍ରହ୍ମ ଗାୟତ୍ରୀ, ଓଁ ଭୂ ଭୂର୍ବ ସ୍ୱ ମହ
ଜନ ତପ ସତ୍ୟର ମହା ଈଶ୍ୱର ଅର୍ଥାତ୍
(ଦେବଦେବ ) ଈଶ୍ୱର (ପରମ)

ଈଶ୍ୱର = ପ୍ରାଣ କର୍ତ୍ତା ( ଆତ୍ମଜ , ଅଣ୍ଡଜ,
ସ୍ୱେଦଜ ଓ ଉଦ୍‌ଭିଦଜ) ସ୍ଥଳଚର, ଜଳଚର
ଓ ଗଗନଚର ।

ଏକ ତେଜ ବିନ୍ଦୁ = ଦିବ୍ୟ ଜ୍ୟୋତି

ମହା ଈଶ୍ୱର = ଅନନ୍ତ ଈଶ୍ୱର (ସର୍ବୋପରି
ପ୍ରାଣାଧାର )

ଯେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ବ୍ରହ୍ମ ଗାୟତ୍ରୀ ରୂପ
ଓଁ ଭୂ ଭୂର୍ବ, ସ୍ୱ, ମହ, ଜନ; ତପ ଓ ସତ୍ୟ )
ଦେବ ଦେବ ପରମାତ୍ମା ପରିପୂର୍ଣ୍ଣ । ଚତୁର୍ବିଧା ଜୀବ
(ଆତ୍ମଜ, ଆଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଦଜ ଓ ତ୍ରିବିଧ/
ଚର (ଜଳଚର, ସ୍ଥଳଚର ଓ ଗଗନଚର ) ଶ୍ରେଣୀର
ଆତ୍ମା ରୂପ ପ୍ରାଣ କର୍ତ୍ତା ଯେ ଅନନ୍ତ ଈଶ୍ୱର ଏକ
ଜ୍ୟୋତିର୍ମୟ ବିନ୍ଦୁ ଦିବ୍ୟ ଜ୍ୟୋତି ସେହି ପରମ ସତ୍ୟ
ଅଟେ ।

ଓଁ

**ମହାଶକ୍ତିର ସେ ସ୍ଥଳୀ ଉଦ୍‌ଗମ**
**ବିଚାର ସେ ଜ୍ଞାନ, ଇଚ୍ଛା କରମ ॥**

\+ \+ \+

ମହାଶକ୍ତିର = ମହତ ଶକ୍ତିର, ବ୍ରହ୍ମନାଦର ।
ସେ ସ୍ଥଳୀ = ସେ ଉତ୍ତମ ପୀଠ ।
ଉଦ୍‌ଗମ = ଉତ୍ପତ୍ତି ।
ବିଚାର ସେ = ଅବର୍ଣ୍ଣନୀୟ ।
ଜ୍ଞାନ = ଯେଉଁ ବିଦ୍ୟାବଳରେ ଚୈତନ୍ୟ ସତ୍ତା ଏକ ଓ ଅଦ୍ୱିତୀୟ ବୋଲି ଜାଣି ହୁଏ ।
ଇଚ୍ଛା = ଯେଉଁ ବିଦ୍ୟା ବଳରେ ସତ୍ୟ ପ୍ରତି ଅନୁରାଗ ଜନ୍ମେ ।
କର୍ମ = ସାଧନା ( ତପସ୍ୟା ) ବ୍ରହ୍ମ ଧାରଣାର ମାର୍ଗ ।

ଯେ ଅବର୍ଣ୍ଣନୀୟ ମହାଶକ୍ତିର ଉଦ୍‌ଗମ ପୀଠ । ଯାର ପରମ ତେଜରୁ ଯୋଗମାୟାର ଯୁକ୍ତିରେ ଜ୍ଞାନ ଇଚ୍ଛା ଓ କର୍ମ ନାମା ପ୍ରଖର ରାମିଣୀ ମୋହ ରୂପା ନଦୀ ସମୂହ ସୃଷ୍ଟି ହୁଏ, ସେହି ଏକ ଅଦ୍ୱିତୀୟ ସତ୍ୟ ବୋଲି ଜାଣ ।

ଓଁ

**ଅର୍ଦ୍ଧମାତ୍ରା ନାମ ଧରେ ଶକତ**
**ମହା ଅନ୍ତରୀକ୍ଷେ ବାଢ଼ି ପ୍ରଣତ ।**

\+ \+ \+

ଅର୍ଦ୍ଧମାତ୍ରା = ଅର୍ଦ୍ଧଚନ୍ଦ୍ର, ଆଦ୍ୟ, ପ୍ରଥମ ଅଂଶ ।
ପରମ ପ୍ରକୃତି ।
ନାମ ଧରେ ଶକତ = ମହାଶକ୍ତି ନାମରେ ନାମିତ ହୁଏ ।
ମହା ଅନ୍ତରୀକ୍ଷେ = ମହାକାଶରେ ।
ବାଢ଼ି ପ୍ରଣତ = ଆରାଧନା ପୂର୍ବକ ।

ପରମ ଆକାଶରେ ପରମ ତେଜକୁ ଆରାଧନା ପୂର୍ବକ ପରମ ତେଜ ସମ୍ଭବୀୟ ମହାଶକ୍ତି ପରମା ପ୍ରକୃତି ଅର୍ଦ୍ଧଚନ୍ଦ୍ର ଆଦ୍ୟ ଓ ପ୍ରଥମ ଅଂଶ ନାମରେ ନାମିତ ହୁଏ । ଏହାହିଁ ଜଗଦମ୍ବାର ପ୍ରଥମ ପ୍ରକାଶ ।

ଓଁ

## ଅର୍ଦ୍ଧନାରୀଶ୍ୱର ସ୍ୱୟଂଭୂ ଲିଙ୍ଗ ତତ୍ତ୍ୱ ରଚନାର ତତ୍ତ୍ୱବ ଲିଙ୍ଗ ॥

\+ \+ \+

ଅର୍ଦ୍ଧନାରୀଶ୍ୱର—ପରମ ତତ୍ତ୍ୱ ପ୍ରକୃତି ଓ ପୁରୁଷର ଘନୀଭୂତ ଅବସ୍ଥା । ଅର୍ଥାତ୍ ବ୍ରହ୍ମଜ୍ୟୋତି । ସ୍ୱୟଂଭୂ—ନିଜେ ନିଜ କୃତ ।
ଲିଙ୍ଗ—ଚିତ୍ ଚିହ୍ନ ।
ତତ୍ତ୍ୱ ରଚନା—ଅନ୍ତର୍ଯ୍ୟାମୀଙ୍କର ସୃଷ୍ଟି ।
ତତ୍ତ୍ୱବ—ବିଶେଷ ତତ୍ତ୍ୱରେ ଉଦୟ ।
ଲିଙ୍ଗ—ମଙ୍ଗଳ ମୟ ପୁରୁଷାକାର ।

ପ୍ରକୃତି ଓ ପୁରୁଷର ଘନୀଭୂତ ଅବସ୍ଥା ହିଁ ଅର୍ଦ୍ଧନାରୀଶ୍ୱର । ଏହାର ଅନ୍ୟ ନାମ ବ୍ରହ୍ମଜ୍ୟୋତି । ଏହା ତତ୍ତ୍ୱାକାର "ସ୍ୱୟଂଭୂ" ନିଜ କୃତ ନିଜେ ହିଁ ପ୍ରକାଶମାନ ହୋଇଥାଏ । ଏହା ହିଁ ପରମ ତତ୍ତ୍ୱର ଚିତ୍ ଚିହ୍ନ ଲିଙ୍ଗ ସ୍ୱରୂପ ମଙ୍ଗଳମୟ ପୁରୁଷାକାର ମହତ୍ ଓଜ ଅଟେ ।

ଓଁ

ଚନ୍ଦ୍ରବିନ୍ଦୁ ଦିଶେ କେଡ଼େ ସୁନ୍ଦର
ନାଦ ବିନ୍ଦୁ ସେ କି ଆନନ୍ଦ ଝର ।

+ + +

ଚନ୍ଦ୍ର—ମହାଶକ୍ତି
ବିନ୍ଦୁ—ମହାତେଜ
କେଡ଼େ ସୁନ୍ଦର — ଅନିର୍ବଚନୀୟ ସୁଷମାର ଆଧାର ।
ନାଦ—ଅର୍ଦ୍ଧମାତ୍ର
ବିନ୍ଦୁ—ସଚ୍ଚିଦାନନ୍ଦ ଘନ
ସନ୍ଧିନୀ, ସମ୍ବେଦନୀ ଓ ହ୍ଲାଦିନୀ । ସମାହାର
ଆନନ୍ଦ ଝର— ମହାଶକ୍ତି ତତ୍ତ୍ୱର ଏକତ୍ରୀକରଣ ଅମୃତ ଧାର ।

ମହାଶକ୍ତି ଓ ମହାତେଜର ଯୁଗ୍ମାବସ୍ଥା ଏକ ଅନିର୍ବଚନୀୟ ସୁଷମାର ଆଧାର ହିଁ ମନୋରମ ଚନ୍ଦ୍ରବିନ୍ଦୁ, ଅର୍ଦ୍ଧମାତ୍ରା ଓ ସଚ୍ଚିଦାନନ୍ଦ ଘନ ନାମା ସନ୍ଧିନୀ ସମ୍ବେଦନୀ ଓ ହ୍ଲାଦିନୀ ଶକ୍ତି ତତ୍ତ୍ୱର ଏକତ୍ରୀକରଣ ଅମୃତ ଧାର ଅଟେ ।

ଓଁ

**ମହାକାଳୀ ମହାବାଣୀ ସେ ରମା**
**ଏକ ତତ୍ତ୍ୱ ପଥ ସେ ମନୋରମା ।**

\+ \+ \+

ମହାକାଳୀ—ଶ୍ୟାମା, ପାତାଳ, ମୂଳାଧାର, ଦକ୍ଷିଣ ମେରୁ,

ମହାବାଣୀ—ମହାସରସ୍ୱତୀ; ସ୍ୱର୍ଗ, ସତ୍ୟ, ଉତ୍ତର ମେରୁ ।

ସେ ରମା—ମହାଲକ୍ଷ୍ମୀ, ମର୍ତ୍ତ୍ୟ, 'ଅନାହତ, ମଧ୍ୟ ମେରୁ

ଏକ ତତ୍ତ୍ୱ ପଥ—ଏକ ମହା ତତ୍ତ୍ୱର କେନ୍ଦ୍ରୀକରଣ

ସେ ମନୋରମା – ଚୈତନ୍ୟ ଯାହାର କ୍ରୀଡ଼ାଭୂମି ।

ମହା ସରସ୍ୱତୀ, ମହାଲକ୍ଷ୍ମୀ, ଓ ମହାକାଳୀ ଏକ ପରମ ଶକ୍ତିର ତ୍ରିବିଧ ସଂସାର ରକ୍ଷାକାରିଣୀ ମଣ୍ଡଳାକାର ଶକ୍ତି । ବିରାଟ ପୁରୁଷର ଶରୀରରେ ଏହା ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ନାମରେ ନାମିତ ହୁଏ । ଯେଉଁ ମହାମେରୁ ଦ୍ୱାରା ଏ ବ୍ରହ୍ମାଣ୍ଡ ସୁରକ୍ଷିତ ତାର ଉତ୍ତରାଂଶ ସରସ୍ୱତୀ ଜ୍ଞାନାଲୋକ ଦକ୍ଷିଣାଂଶ ମହାକାଳୀ ଓ ମଧ୍ୟାଂଶ ମହାଲକ୍ଷ୍ମୀ ଶକ୍ତିର ବିସ୍ତାର ସ୍ଥାନ । ଯୋଗ ଦେହରେ ଏହା ସତ୍ୟ, ଅନାହତ ଓ ମୂଳାଧାର ନାମରେ ନାମିତ ହୁଏ । ସର୍ବୋପରି ଏହି ତ୍ରିଶକ୍ତି ଏକ ଅଦ୍ୱିତୀୟ ମହାଶକ୍ତିର ଏକକେନ୍ଦ୍ରୀକରଣ ଅଟେ । ଏହି ମନୋରମା ଶକ୍ତି ଚେତନ ଭୂମିରେ କ୍ରୀଡ଼ାଶୀଳା କୁଣ୍ଡଳିନୀ ଅଟେ ।

ଓଁ

**ମହାଗର୍ଭେ ଧରେ ପରମ ତେଜ**
**ତିନି ନନ୍ଦନର ଜନନୀ ହେଜ ॥**

+ + +

ମହାଗର୍ଭେ—ବିଶ୍ୱଗର୍ଭରେ (ବିଶ୍ୱଗର୍ଭେ)
ଧରେ—ଧାରଣ କରେ
ପରମ ତେଜ—ପରମ ଜ୍ୟୋତି
ତିନି ନନ୍ଦନର—ତିନୋଟି ଅମର ବୀଜର
ବର୍ଣ୍ଣସମ୍ଭୂ – ବର୍ଣ୍ଣସମ୍ଭୂତ
ଜନନୀ – ଜନ୍ମଦାତ୍ରୀ
ହେଜ – ଗଣନା କରି ଦେଖ

ପରମ୍ବା; ବିଶ୍ୱଗର୍ଭା, ବିଶ୍ୱଗର୍ଭରେ ପରମ ତେଜକୁ ଧାରଣ ପୂର୍ବକ ତିନୋଟି ଅମର ଅର୍ଥାତ୍ ତିନୋଟି ଅକ୍ଷର ବର୍ଣ୍ଣକୁ ଜନ୍ମ ଦିଏ। (ର+ଅ+ମ) ଏହି ଉତ୍ତମ ବର୍ଣ୍ଣ ସମ୍ଭୂ ସତ୍, ଚିତ୍, ଓ ଆନନ୍ଦ ନାମା ଅଟେ । ରାମ—ସଚ୍ଚିଦାନନ୍ଦ ଘନ ପରମ ସତ୍ୟ

ଓଁ

## କାଳେ ପୂତ୍ରବତୀ ପ୍ରସବ ଲୀଳା
## ଗୁପତ ବାନ୍ଦୁକୁ ଓଢ଼ଣି ହେଲା ॥

\+ \+ \+

କାଳେ ପୁତ୍ରବତୀ—କାଳର ଉଦ୍‌ଭବରେ
ସନ୍ତାନ ମାନଙ୍କ ଜନନୀ (ଗୁଣତ୍ରୟର ମାତା)
ପ୍ରସବ—ଦ୍ୱାରା ପ୍ରକଟ
ଲୀଳା = କ୍ରୀଡ଼ା
ଗୁପତ ବାନ୍ଦୁକୁ—ପରମ ଜ୍ୟୋତକୁ
ଓଢ଼ଣି ହେଲା—ଆବରଣ ହେଲା । ପରମ
ରହସ୍ୟକୁ ସେ ଗୋପନ ରଖିଲା ।

କାଳର ଉଦ୍‌ଭବରେ ଜଗତ୍ ଜନନୀ ତ୍ରିଗୁଣମୟୀର ମାତା ଅପୂର୍ବ ଲୀଳା ଦ୍ୱାରା ପ୍ରକଟ ପରମ ଜ୍ୟୋତି ଗୁପ୍ତ ବାନ୍ଦୁକୁ ଯୋଗ ମାୟାରେ ଆବୃତ କଲା । ଏହା ପରମ ରହସ୍ୟ ଅତ୍ୟନ୍ତ ଗୋପନୀୟ । ଯେ ପର୍ଯ୍ୟନ୍ତ ମାତା କୃପାଲବ୍ଧ ହୁଏ ନା ବ୍ରହ୍ମରନ୍ଧ୍ରର ଭେଦନ କଦାପି ସମ୍ଭବ ନୁହେଁ ବା ମହାଶୂନ୍ୟକୁ ପ୍ରତ୍ୟକ୍ଷୀଭୂତ କରିବା ଏକାନ୍ତ ବିଡମ୍ବନା ମାତ୍ର ।

ଓଁ

## ଯୋଗେ ମୋହ ଗଲି ଜଗମୋହିନୀ
## ସ୍ୱରୁ ଅର୍ଦ୍ଧଚନ୍ଦ୍ର ଶୋଭା ଶୋହିନୀ ॥

\+ \+ \+

ଯୋଗେ ମୋହ ଗଲି—ସୃଷ୍ଟି ରଚନା ଇଚ୍ଛା କରି
ଜଗମୋହିନୀ — ମହାଶକ୍ତି, ଯା'ର ମାୟାରେ
ଜଗତ ମୋହିତ ।
ସ୍ୱରୁ ଅର୍ଦ୍ଧଚନ୍ଦ୍ର—ଅଚରୂପ ଅର୍ଦ୍ଧଚନ୍ଦ୍ର ସଙ୍କେତ
ସ୍ୱରୂପା ।
ଶୋଭା ମୋହିନୀ—ନିଜ ଶୋଭାରେ ଯେ ପରମ
ଶୋଭିତ ଅଟେ ।

ସୃଷ୍ଟି ରଚନା ଇଚ୍ଛା କରି ଅର୍ଦ୍ଧଚନ୍ଦ୍ର ସଙ୍କେତ ସ୍ୱରୂପା
ପରମ ଶୋଭାମୟୀ ମହାଯୋଗ ଶକ୍ତି ଧାରଣ ପୂର୍ବକ
(ଅପୂର୍ବ ଯୋଗ ଅବଲମ୍ବନରେ) ପରମ ଶୋଭାୟମାନ
ହେଲି । ଏହି ମହତ୍ ଶୋଭା ମଣ୍ଡଳରୁ ଚଳାୟମାନ
ଜଗତ୍ ମଣ୍ଡଳର ଉଦ୍ଭବ ।

ଓଁ

## ତିନି ନନ୍ଦନର ତିନି ବେଭାର
## ଦେଖି ଗୃହୁ କେଶୀ ଗୁନ୍ଥିଲା ହାର ॥

+ + +

ତିନି ନନ୍ଦନର—ତିନୋଟି ସନ୍ତାନର ଅର୍ଥାତ୍
(ଗୁଣସ୍ୱରୂପର)
ତିନି ବେଭାର—ତିନୋଟି ସ୍ୱତନ୍ତ୍ର ମାର୍ଗ
ଦେଖି ବୃହୁକେଶୀ—ଜ୍ଞଟର କେଶା ବଟଣ
ମାୟା ଦ୍ୱାରା ପୂର୍ବକ
ଗୁନ୍ଥିଲ ହାର—ଓତଃପ୍ରୋତଃ, ସତ୍ତ୍ୱ, ରଜ ତମ
ମାଧ୍ୟମରେ ସମ୍ପଦାୟ ଜଗତକୁ ଏକ ଅପୂର୍ବ
ମାଳାରେ ଗ୍ରନ୍ଥନ କଲ

ଏହି ଗୁଣ ସ୍ୱରୂପ ସ୍ୱତନ୍ତ୍ର "ତିନୋଟି ମାର୍ଗର" ପ୍ରକାଶ ହେଲା। ଜନନୀ ଯୋଗମାୟା ଜ୍ଞଟର କେଶା ବଟଣ ମାୟା ଦ୍ୱାରା ପୂର୍ବକ ଓତଃପ୍ରୋତଃ ସତ୍ତ୍ୱ, ରଜ, ଓ ତମର ମାଧ୍ୟମରେ ଜଗତକୁ ଏକ ଅପୂର୍ବ ମାଳାରେ ଗ୍ରନ୍ଥନ କଲା।

ଓଁ

## ତିନି ରଙ୍ଗ ଭରା ତିନି କୁସୁମ
## ଲଭିଲେ ଜନନୀ କର ଉସୁମ ॥

\+ \+ \+

ତିନି ରଙ୍ଗଭରା = ତିନୋଟି ରସରେ ସମୁଦାୟ ଜଗତ ଭରପୂର ହୋଇଗଲା । ରଙ୍ଗସବୁ (ଶ୍ୱେତ, ରକ୍ତ ଓ ଗାଢ଼ ନୀଳ)

ତିନି କୁସୁମ = ଶ୍ୱେତପଦ୍ମ, ରକ୍ତପଦ୍ମ, ଓ ନୀଳପଦ୍ମ । ଯୋଗମାୟାର ଗୂଢ଼ ରହସ୍ୟ ମଧ୍ୟରୁ ଉଦ୍‌ଭବ ହୋଇ ସମୁଦାୟ ଜଗତକୁ ନବୀନ ବାସ ଓ ନବୀନ ରସରେ ମଣ୍ଡି ଦେଲେ । ପଶ୍ଚାତ୍‌ରେ ତିନି ଲୋକର ପ୍ରକାଶ ସମ୍ଭବ ହେଲା ।

ଲଭିଲେ ଜନନୀ କର ଉସୁମ = ଯୋଗ ସୂତ୍ରରେ ଗ୍ରନ୍ଥିତ ଚରାଚର ଜଗତ୍ ଯୋଗମାୟାର ଇଙ୍ଗିତ ମାତ୍ର ।

ତିନୋଟି ସୁରଭ ରସରେ ସମୁଦାୟ ଜଗତ୍ ଭରପୂର ହୋଇଗଲା । ଯୋଗ ମାୟାର ଗୂଢ଼ ରହସ୍ୟ ମଧ୍ୟରୁ ଶ୍ୱେତ ପଦ୍ମ, ରକ୍ତ ପଦ୍ମ ଓ ନୀଳପଦ୍ମ ଉଦ୍‌ଭବ ହୋଇ ସମୁଦାୟ ଜଗତକୁ ନବୀନ,ବାସ ଓ ରସରେ ମଣ୍ଡି ଦେଲା । ପଶ୍ଚାତ୍‌ରେ ତ୍ରିଗୁଣାତ୍ମିକା ଅପୂର୍ବ ଜଗତର ପ୍ରକାଶ ସମ୍ଭବ ହେଲା । ଯୋଗ ସୂତ୍ରର ଗ୍ରନ୍ଥା, ଏ ଚରାଚର ଜଗତ୍ ଯୋଗମାୟାର ଇଙ୍ଗିତ ମାତ୍ର ।

ଓଁ

**ଶ୍ୱେତେ ନେଲ୍ ସତ୍ତ୍ୱ ରଜ ରକ୍ତିମା**
**ନୀଳ ତମ ନେଲ୍ ପ୍ରକଟି ସୀମା ||**

+ + +

ଶ୍ୱେତ ନେଲ ସତ୍ତ୍ୱ = ଶ୍ୱେତ ସତ୍ତ୍ୱ ଗୁଣକୁ ଆଶ୍ରୟ କଲ୍ ।
ରକ୍ତ ରଜ ରକ୍ତିମା = ରକ୍ତ ରଜ ଗୁଣକୁ ଆଶ୍ରୟ କଲ ।
ନୀଳତମ ନେଲ = ନୀଳତମ ଗୁଣକୁ ଆଶ୍ରୟ କଲ
ସତ୍ତ୍ୱ—ବିଷ୍ଣୁ = ବୈଷ୍ଣବୀ, ସ୍ଥିତି ର + ଅ + ମ = ରାମ
ରଜ—ବ୍ରହ୍ମା = ବ୍ରହ୍ମାଣୀ, ସୃଷ୍ଟି ଓ + ଅ + ମ = ଓଁ
ତମ—ରୁଦ୍ର = ରୁଦ୍ରାଣୀ—ଲୟ ଓ + ମ + ଅ = ଓମା
ପ୍ରତ୍ୟେକଙ୍କ ଏକ ମହାଶକ୍ତିରେ ଯୋଗ ହେଲେ ।
ପ୍ରକଟି ସୀମା— ଓଜମୟ ବିରାଟ ପୁରୁଷ ସ୍ୱ ଦେହରେ ଓଜ ଶକ୍ତି ସମନ୍ୱିତ ତର୍ପୋଟି ମହତ ନାଦ କେନ୍ଦ୍ର ସୃଷ୍ଟି କଲ

ବୈଷ୍ଣବ ନାଦ ର+ଅ+ମ=ରାମ
ଶୈବ ନାଦ—ଅ+ଉ+ମ=ଓଁ
ଶାକ୍ତ ନାଦ=ଉ+ମ+ଅ=ଉମା (ମା)

ଶ୍ୱେତ, ରକ୍ତ ଓ ନୀଳ ଯଥାକ୍ରମେ ସତ୍ତ୍ୱ, ରଜ ଓ ତମ ଗୁଣକୁ ଆଶ୍ରୟ କଲେ । ପୁନଃ ଏକ ଏକ ମହା ଶକ୍ତିରେ ଯୋଗ ହେଲେ । ଏହି ଯୋଗ ରେଖା ପ୍ରକମ୍ପନ ଉଜ୍ଜମୟ ବିରାଟ ପୁରୁଷର ଶରୀରରେ ଓଜଶକ୍ତି ସମନ୍ୱିତ ତିନୋଟି ମହତ ନାଦ କେନ୍ଦ୍ର ସୃଷ୍ଟି ହେଲା ।

ଓଁ

**ବାତ୍ସଲ୍ୟ ରସର ଏ ରଜ୍ଜୁ ତିନି**
**ଛନ୍ଦି ହୋଇଗଲେ ଶକତି ଦେଇ ।**

+ + +

ରସ—ନବଧା

ବାତ୍ସଲ୍ୟ ରସର — ଜଗଦମ୍ବାର ଅପାର କୃପାରୁ (ପୁତ୍ର ସ୍ନେହ ଜାତ ରସ) ଏହି ସ୍ନେହ ଏ ରଜ୍ଜୁ ତିନି — ପୁତ୍ର ତିନୋଟି ଛନ୍ଦ ହୋଇଗଲେ ।

ଛନ୍ଦ ହୋଇଗଲେ—ଜଗତ୍ ଛନ୍ଦନାରେ ବନ୍ଦୀ ହେଲେ ।

ଶକ୍ତି ଦେଇ—ନିଜ ନିଜ ସ୍ୱତନ୍ତ୍ରତା ଦେଇ ଗୁଣର କ୍ରିୟାସ୍ଥାନ ରସ । ମନ ରସରେ ନି-ମଜ୍ଜେ ।

ଜଗଦମ୍ବାର ଅପାର କୃପାରୁ ଏହି ସ୍ନେହ ସୂତ୍ର ତିନୋଟି ନିଜ ନିଜର ସ୍ୱତନ୍ତ୍ରତାକୁ ଦେଇ ଜଗତ୍ ଛନ୍ଦନାରେ ସକ୍ରିୟ ଅଂଶ ଗ୍ରହଣ ପୂର୍ବକ ଜଗତ ମାତାର ନବୀନ ସର୍ବସ୍ୱ ରସ ପାନରେ ମଜ୍ଜି ରହିଲେ ।

ଓଁ

## ନିର୍ଗୁଣ ରେ ଗୁଣ ଧରିଲା ରବ
## ସୃଷ୍ଟି ରଚନାର ଆଦ୍ୟ ପରବ ॥

+ + +

ନିର୍ଗୁଣରେ ଗୁଣ-ପରମ ତତ୍ତ୍ୱ ଗୁଣାତୀତ ଅଟେ ।
ଏହା ସତ୍, ଚିତ୍, ଆନନ୍ଦର ଘନୀଭୂତ ଅବସ୍ଥା ।
କେବଳ ଏକ ମହତ ତତ୍ତ୍ୱ — ମାୟା ଯୁକ୍ତରେ
(ଆଦ୍ୟ ଶକ୍ତି ସଂଯୁକ୍ତରେ)
ଧରିଲା ରବ—ଗୁଣାନ୍ୱିତ(ପରମନାଦମୟ) ହେଲ
ସୃଷ୍ଟି ରଚନାର— ଜଗତ ସ୍ପନ୍ଦନାର (ଭୂତ
ମାନଙ୍କର ନିର୍ମାଣ)
ଆଦ୍ୟ ପରବ—ପ୍ରଥମ ପ୍ରକ୍ରିୟା(ପ୍ରଥମ ପ୍ରଚେଷ୍ଟା

ପରମ ତତ୍ତ୍ୱ ଗୁଣାତୀତ ଅଟେ । ଏହା ସତ୍, ଚିତ୍ ଆନନ୍ଦର ଘନୀଭୂତ ଅବସ୍ଥା । ତେଜ ବନ୍ଦୁସ୍ଥ ଜାତ ଆଦ୍ୟଶକ୍ତି ସଂଯୁକ୍ତରେ (ପରମ ଗୁଣାନ୍ୱିତ) ପରମ ନାଦମୟ ହେଲ । ଏହା ଜଗତ୍ ସ୍ପନ୍ଦନା ଅର୍ଥାତ୍ ଭୂତ ମାନଙ୍କ ନିର୍ମାଣରେ ପ୍ରଥମ ପର୍ଯ୍ୟାୟ ରୂପେ କଥିତ ବା ପ୍ରଥମ ଅଂଶ ପ୍ରଚେଷ୍ଟାର୍ଦ୍ଧି ଅଟେ ।

ଓଁ

**ମହାଘୋଷ ଗଲା ଗୁଣରେ ମିଶି**
**ଗୃହ ଭଗ ହେଲା ଶୂନ୍ୟ ସରସୀ ॥**

\+ \+ \+

ମହାଘୋଷ—ପରମ ନାଦ ( ଯାହା ଅଚ୍ଛେଦ୍ୟ)
ଗଲା ଗୁଣରେ ମିଶି—ଗୁଣ ସଙ୍ଗ ଲଭରେ ।
ମହାବର୍ଣ୍ଣ ମାନଙ୍କୁ ଧାରଣ ପୂର୍ବକ (ସ୍ୱର ଓ
ବ୍ୟଞ୍ଜନ) ବର୍ଣ୍ଣ ଅବିନାଶ (ଅବିନଶ୍ୱର) ବପୁ ।
ଗୃହଭଗ ହେଲ--ଚତୁର୍ଦ୍ଧା ବିଭକ୍ତ ହେଲ ଅର୍ଥାତ୍
ଉପସର୍ଗ ମାନଙ୍କର ଉତ୍ପତ୍ତି ହେଲ ।
ଉପସର୍ଗ ସ୍ୱରେଟି—ଏହା ବ୍ରହ୍ମାଙ୍କର ଅର୍ଥାତ୍
ସ୍ରଷ୍ଟାଙ୍କର ସ୍ୱରେଟି ଶିର ରୂପ ବର୍ଣ୍ଣିତ ଜ୍ଞାନ
ଉଦ୍‌ଗମ ସ୍ଥାନ । ଋକ୍, ଯଜୁ, ସାମ ଓ ଅଥର୍ବ
ନାମରେ ବିଦିତ । ସ୍ରଷ୍ଟା ଏଥିରେ ଏକମାତ୍ର
ଉପସର୍ଗ ପ୍ରତ୍ୟେକ ଉପସର୍ଗ ଜ୍ଞାନ ଓ କର୍ମ ରୂପା
ଦ୍ୱିଧା ।
ଶୂନ୍ୟ—ଅବ୍ୟକ୍ତ
ସରସୀ—ରସ ପୂର୍ଣ୍ଣ

ପରମ ନାଦ ଗୁଣ ସଙ୍ଗ ଲଭରେ ମହାବର୍ଣ୍ଣ ମାନଙ୍କୁ ଧାରଣ ପୂର୍ବକ ଗୃହ ଭଗରେ ବିଭକ୍ତ ହେଲ । ଅର୍ଥାତ୍ ଉପସର୍ଗ "ତେଜ" ମାନଙ୍କ ଉତ୍ପତ୍ତି ହେଲ । ଉକ୍ତ ଗୃହ ଉପସର୍ଗରେ ଚୈତନ୍ୟ ଏକମାତ୍ର ଉପସର୍ଗ 'ସ୍ରଷ୍ଟା' ପ୍ରତ୍ୟେକ ଉପସର୍ଗ ଜ୍ଞାନ ଓ କର୍ମ ରୂପା ଦ୍ୱିଧା ଅଟନ୍ତି ।

ଓଁ

**ପ୍ରତ ଘାଟେ ଲୋଟେ ଓଲଟ ହଂସ**
**ଅଣ୍ଡ ନାହିଁ ଶ୍ରୁତି ବଢ଼ାଏ ବଂଶ ॥**

\+ + +

ପ୍ରତ ଘାଟେ— ପ୍ରତି ଉପସର୍ଗରେ
ଓଲଟ ହଂସ—ବୀଜାକ୍ଷର ଓଁକାରର ବିକାଶ ସତତ ବିଦ୍ୟମାନ ।
ଓଲଟ—ଅ+ଉ+ମ=ଓଁ
ହଂସ – ସୋଽହଂ (ବ୍ରହ୍ମକୋଷ)
ଅଣ୍ଡ ନାହିଁ—କୋଷ ଶୂନ୍ୟ । ବ୍ରହ୍ମାଣ୍ଡର ଗୋପନତ୍ତ୍ୱ । ପରମ ଜ୍ୟୋତି ରହସ୍ୟର ଅନ୍ତରାଳରେ ନିହିତ କରେ ।
ଶ୍ରୁତି—ବେଦ, ଜ୍ଞାନ
ବଢ଼ାଏ ବଂଶ--ଦିବ୍ୟାର୍ଥ ଲାଭ ପାଇଁ ପ୍ରଯତ୍ନ କରେ
ବଂଶ—ଅନେକ ଶାଖା ତଥା ପ୍ରଶାଖାରେ ଜ୍ଞାନ ମାର୍ଗର ତଥ୍ୟ ସମ୍ବଳିତ । ପକ୍ଷାନ୍ତରେ ଅବ୍ୟକ୍ତରେ ବ୍ୟକ୍ତ । ନିରାକାରରେ ସାକାର (ସୂକ୍ଷ୍ମ ସ୍ଥୂଳତ୍ୱରେ ପ୍ରତିପାଦିତ ହୁଏ ।)

ବୀଜାକ୍ଷର ଓଁକାରର ବିକାଶ ପ୍ରତି ଉପସର୍ଗରେ ସତତ ବିଦ୍ୟମାନ । ବ୍ରହ୍ମକୋଷ ମହାଶକ୍ତିର ଏକ ଗୋପନ ତତ୍ତ୍ୱ । ପରମଜ୍ୟୋତି(ରହସ୍ୟ ଅନ୍ତରାଳରେ) ଅଦୃଷ୍ଟ ରୂପ ଯୋଗ ଶକ୍ତିରେ ଲୀନ ହୋଇଗଲା । ଏହା ଅବ୍ୟକ୍ତ । ବେଦ ଏହା ନିର୍ଣ୍ଣୟ କରି ନପାରି ନେତି, ନେତି ଓଁକାର ରବରେ ସ୍ଥିର । ବର୍ତ୍ତମାନ ଏହି ତତ୍ତ୍ୱ ଲବ୍ଧ ପ୍ରତ୍ୟାଶୀ ବିସର୍ଗ ବର୍ଗ ନାନା ଶାଖାରେ ଜୀବନ ବୃକ୍ଷ ରୂପ ବିଦ୍ୟମାନ ।

ଓଁ

**ବ୍ରହ୍ମ ଧାରଣାର ପ୍ରତି ବିଭାଗ**
**ଚଉରସ ହେଲେ ବିରଚି ଯାଗ ||**

+ + +

ବ୍ରହ୍ମ ଧାରଣାରେ—ପରମ ତତ୍ତ୍ୱ ପ୍ରାପ୍ତିରେ
ପ୍ରତି ବିଭାଗ—ପ୍ରତି ଉପସର୍ଗ (ଜ୍ଞାନର ସ୍ୱତନ୍ତ୍ର ଭାଗ)
ଚଉରସ ହେଲେ—ବର୍ଗାକୃତି (ସ୍ୱତନ୍ତ୍ର ରସଯୁକ୍ତ)
ବିରଚି ଯାଗ—ଯୋଗ ରଚନା ପୂର୍ବକ
ସ୍ଥିରୀକୃତ ହେଲେ ।

ପରମ ତତ୍ତ୍ୱ ପ୍ରାପ୍ତିରେ ପ୍ରତ୍ୟାଶୀ ପ୍ରତି ଉପସର୍ଗ (ଜ୍ଞାନ ଚତୁଷ୍ଟୟ) ଅପୂର୍ବ ଯୋଗ ରଚନା ପୂର୍ବକ ଏକରସ ଯୁକ୍ତ ବର୍ଗାକାର କ୍ଷେତ୍ରରେ ସ୍ଥିର ହୋଇଗଲେ । ଏହା ହିଁ ମହତ୍ ବ୍ରହ୍ମ ଯଜ୍ଞ ପୀଠ । ଯଜ୍ଞାଗ୍ନି ପ୍ରାଣ, ଓ ସୋମ ଘୃତାହୁତି ରୂପ ଧାରଣ କରି ପରମ ନାଦର ମାଧ୍ୟମରେ ଯଜ୍ଞ ପୁରୁଷ ସଦାନନ୍ଦଙ୍କୁ ଆହ୍ୱାନ ପୂର୍ବକ ଅବ୍ୟକ୍ତ ତତ୍ତ୍ୱ ଚିନ୍ତାମଣି ଧାରଣାରେ ଯଜ୍ଞ କର୍ମରେ ପ୍ରବୃତ୍ତ ହେଲେ । ଜ୍ଞାନ ଓ କର୍ମ ଉଭୟ ଯଜ୍ଞରେ; ମହତ୍ତ୍ୱ ତତ୍ତ୍ୱ ହିଁ, ଏକମାତ୍ର ଅବଲମ୍ବନ । ଏଣୁ ଅବଲମ୍ବନ ଏକ ତଥା ଚତୁର୍ବିଧ ।

ଓଁ

## ମରାଳଯୁଗଳ ମାନ ଦଣ୍ଡିରେ
## ଭରାଗଲା ବେଦ ଦାନ ଦଣ୍ଡିରେ ॥

\+ \+ \+

ମରାଳଯୁଗଳ—ପରମ ପୁରୁଷ ଓ ପରମପ୍ରକୃତି
ର ଲୟ ସ୍ଥାନ ( ତ୍ରିକୂଟୀସ୍ଥ ) ସ୍ବସ୍ଥାନ ଅର୍ଥାତ୍
ତ୍ରିକୂଟୀ ଗୁହାରେ ଲୀନ ଗଲା । ତପ ଲୋକ
ଅତିକ୍ରମଣ ପୂର୍ବକ ଅଦୃଷ୍ଟ ଅର୍ଥାତ୍ ଲୁପ୍ତ
ରୂପେ ବିଦ୍ୟମାନ ରହିଲା ।

ମାନ ଦଣ୍ଡିରେ—ଅହଂକାରରେ

ଭରାଗଲା ବେଦ—ବେଦ ସକାମ ଯୁକ୍ତ

ଦାନ ଦଣ୍ଡିରେ—ବିଷୟ ମାନଙ୍କ ପ୍ରାପ୍ତି
ମାର୍ଗରେ ଅବଧାରିତ ହେଲା ।

ଏହି ମହତ୍ ବାକ୍ୟ ପଙ୍କ୍ତିର ଉଦ୍ଭବରେ ପରମା ପ୍ରକୃତି ଓ ପରମ ପୁରୁଷ (ନାଦବିନ୍ଦୁ) ତ୍ରିକୂଟୀ ଗୁହା ମଧ୍ୟରେ ଲୀନ ହୋଇଗଲେ । ଏହି ତ୍ରିକୂଟ ତପ ଲୋକ । ମନୋମୟ କୋଷର ଗତି ଏହି ତପ ଲୋକର ସୀମା ପର୍ଯ୍ୟନ୍ତ । ଏହିଠାରେ ତତ୍ତ୍ୱ ଅଦୃଷ୍ଟ ତଥା ଲୁପ୍ତ ରୂପେ ବିଦ୍ୟମାନ ଥାଏ । ପରମ ତତ୍ତ୍ୱର ଅଦୃଷ୍ଟରେ ବେଦ ମହାଭୂତ ଅହଂକାରକୁ ଆଶ୍ରୟ କରି ସକାମ ଯୁକ୍ତ ବିଷୟ ମାନଙ୍କୁ ପ୍ରାପ୍ତି ମାର୍ଗରେ ଅବଧାରିତ ହେଲା ଅର୍ଥାତ୍ ସିଦ୍ଧି ମାନଙ୍କୁ ଅନୁଧାବନ କଲା ।

ଓଁ

**ଦଣ୍ଡି ଧରି ନେଲା ମହନ୍ତ ଯୁବା**
**ବ୍ରହ୍ମ ଧାରଣାର କେମନ୍ତ ଶୋଭା ॥**

+ + +

ଦଣ୍ଡି ଧରି ନେଲା—ବିଷୟରେ ପ୍ରବୃତ୍ତି ତଥା କର୍ମ ଜଡ଼ ଭବରେ ।
ମହନ୍ତ ଯୁବା – ଅଦୃଷ୍ଟ ନିୟନ୍ତା ( ଅନ୍ତର୍ଯ୍ୟାମୀ ) ସମତା ନାମକ ଯୋଗକୁ ଆଶ୍ରୟ କରି ଫଳ ଦାତା ରୂପେ ନିତ୍ୟ ବିରାଜମାନ ହେଲା ।
ବ୍ରହ୍ମ ଧାରଣା—ବ୍ରହ୍ମ ତତ୍ତ୍ୱ ଲାଭରେ ବେଦ ବା ଜ୍ଞାନ ଏକ ନୂତନ ମାର୍ଗ ପ୍ରଦର୍ଶନ କଲା । ବର୍ତ୍ତମାନ କାମନା ସିଦ୍ଧି ମାନଙ୍କୁ ଅନୁଧାବନ କରୁଥିବାରୁ ତତ୍ତ୍ୱ ଗୋପନ ରହିଲା । କାମନା ଯୋଗୀକୁ ବ୍ରହ୍ମ ଲୋକରୁ ମଧ୍ୟ ପୁଣ୍ୟକ୍ଷୟ ହେଲେ ଜନ୍ମଗାମୀ କରାଏ ।
କେମନ୍ତ ଶୋଭା—ତତ୍ତ୍ୱ ଲାଭ ସ୍ଥାନରେ ସ୍ୱର୍ଗ-ଲାଭ ହୁଏ । ବେଦର ସାର ତତ୍ତ୍ୱାର୍ଥ, ଜ୍ଞାନ ଓ କର୍ମରେ ଦ୍ୱିଧା ସକାମ ଓ ନିଷ୍କାମ (ଉଭୟ ନିଷ୍କାମଯୁକ୍ତ )।

କର୍ମ ମାନଙ୍କ ଉତ୍‌ଭବରେ କର୍ମ ଫଳର ସୃଷ୍ଟି ହେଲା
ନିମନ୍ତ ଏକମାତ୍ର ସାକ୍ଷୀ ସ୍ୱରୂପ ସମତା ନାମକ
ଯୋଗକୁ ଆଶ୍ରୟ କରି ଚତୁର୍ବର୍ଗ ପ୍ରଜାପାଳନରେ
ପରମ ପ୍ରଜାପତି ରୂପ ଅନ୍ତରଙ୍ଗା ଓ ବହିରଙ୍ଗା
ପ୍ରକାଶରେ ଧର୍ମ ନାମରେ ନାମିତ ହେଲା । ତତ୍ତ୍ୱ
ସକାମ ଯୁକ୍ତିରେ ଧ୍ୟାପିତ ହୋଇ ପାରେ ନା ।
ବର୍ତ୍ତମାନ ବେଦ ଏକ ନୂତନ ମାର୍ଗ ପ୍ରଦର୍ଶନ କଲା ।
ଶିବୋ ଅହଂ—ଅହଂ ବ୍ରହ୍ମାସ୍ମି ॥

ଓଁ

ମହତ ଯୁବତୀ ସଙ୍ଗତେ ରତ
ମାୟା ପ୍ରସବଲ ପଞ୍ଚ ସନ୍ତତ ॥

\+ + +

ମହତ ଯୁବତୀ— ପର ପ୍ରକୃତି, ଚେତନମୟୀ ପ୍ରକୃତି

ସଙ୍ଗତେ ରତ—ପରମ ପୁରୁଷର ମିଳନ । ରମଣ କ୍ରିୟା(ରମ) ଯେ ରମେ

ମାୟା ପ୍ରସବଲ — ମହାଶକ୍ତିଠାରୁ ଉଦ୍ଭବ । ଅର୍ଥାତ୍ ତନ୍ମାତ୍ରା ମାନଙ୍କ ବିକାଶ

ପଞ୍ଚ ସନ୍ତତି—ପାଞ୍ଚ ପୁତ୍ର (ଶଙ୍କର ଜନ୍ମ ଲଭ )

୧-ରାଗ, ୨-ଅନୁରାଗ ୩-ମହାରାଗ
୧-ଭାବ ୨-ଅନୁଭାବ ୩-ମହାଭାବ
୧-ପ୍ରେମ ୨-ପ୍ରୀତି ୩-ରତି

ପରମ ପ୍ରକୃତି ଓ ପରମ ପୁରୁଷର ମିଳନରେ ନବଧା ଗୁଣ ସମ୍ପୂକୁ ଆଶ୍ରୟ କରି ତନ୍ମାତ୍ରା ମାନ ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧାଦି ପଞ୍ଚ ତନ୍ମାତ୍ରା ମାନଙ୍କର ବିକାଶର ସମ୍ଭବ ହେଲା । ପରମ ପ୍ରକୃତି ସ୍ୱଭାବତଃ ଗୁଣାତୀତ ବର୍ତ୍ତମାନ ଗୁଣାବେଶେ ଚେତନା ଓ ଚେତନା ରୂପେ ବିରାଜମାନ କଲା ।

ଓଁ

# ଗାଢେ ପୁତ୍ର ମୁଖ ଚୁମ୍ବନ କରି
# ଗେହେଲେଇ କହିଲ ତନ୍ମନା ଶିରୀ ॥

+ + +

ଗାଢ଼େ ପୁତ୍ରମୁଖ ଚୁମ୍ବନ କରି—ନିଜେ ଗୋପନ ଅର୍ଥାତ୍ ସୂକ୍ଷ୍ମ । ତଦୁପରି (ଅତି ନିଜର କରି) ତନ୍‌ମାତ୍ରା ଗୁଡ଼ିକୁ ମଧ୍ୟ ଗୋପନ କେବଳ ସଂଜ୍ଞା ମାତ୍ର ।

ଗେହ୍ଲେଇ କହିଲ—ଚେତନାରେ ବାନ୍ଧି

ତନମନା— ତତମନା (ସେମାନଙ୍କ ମଧ୍ୟରେ ପ୍ରବେଶ କରି)

ଶିରୀ—ଶୋଭାମୟୀ

ପରମ ଶୋଭାମୟୀ ନିଜେ ଚରମ ସୂକ୍ଷ୍ମ । ଉଦ୍‌ଭବ ତନ୍‌ମାତ୍ରା ଗୁଡ଼ିକ ମଧ୍ୟ ସୂକ୍ଷ୍ମାତିସୂକ୍ଷ୍ମ, ଗୁଣାବଳେ ସେମାନଙ୍କୁ ଉପଲବ୍‌ଧି କରି ହୁଏ । ସମସ୍ତେ ପରମ ଚେତନାର ଅନ୍ତର୍ବର୍ତ୍ତୀ ଅର୍ଥାତ୍ ଗୁଣତ୍ରୟ ଓ ପଞ୍ଚ ସଜ୍ଞ ସମସ୍ତେ ଏକ ଅଦ୍ୱିତୀୟ ଚେତନାରେ ବନ୍ଧା ।

ଓଁ

**ଶବ୍ଦ, ସ୍ପର୍ଶ, ରୂପ ସରସ ଗନ୍ଧ**
**ଭଟଲେ ବାନ୍ଧିଦେଲ୍‌ ପରାଣ ବନ୍ଧ ।**

\+ \+ \+

୧-ଶବ୍ଦ; ଶବ୍ଦ—ମହାକାଶର ଗୁଣ

୨-ସ୍ପର୍ଶ; ଶବ୍ଦ—ପବନର ଗୁଣ

୩-ରୂପ; ଶବ୍ଦ, ସ୍ପର୍ଶ, ରୂପ—ଅଗ୍ନିର ଗୁଣ

୪-ରସ; ଶବ୍ଦ, ସ୍ପର୍ଶ, ରୂପ, ରସ=ଜଳର ଗୁଣ

୫-ଗନ୍ଧ; ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ—ପୃଥିବୀର ଗୁଣ

ଭଟଲେ ବାନ୍ଧି ଦେଲ = ବିଷୟ ମାନଙ୍କୁ ବାନ୍ଧି ରଖିବାର ଉପାଦାନ

ପରାଣ ବନ୍ଧ—ଅନ୍ତଃକରଣୀୟ (ମନ, ବୁଦ୍ଧି, ଚିତ୍ତ, ଅହଂକାର) ମାନଙ୍କର ବିଷୟ ଭୋଗର ମାର୍ଗ

ଏହି ପଞ୍ଚତନ୍‌ମାତ୍ରା ବିଷୟ ମାନଙ୍କୁ ବାନ୍ଧି ରଖିବାର ଏକ ଏକ ଉପାଦାନ । ଅନ୍ତଃକରଣୀୟ (ମନ ବୁଦ୍ଧି ଚିତ୍ତ ଓ ଅହଂକାର) ମାନେ ବିଷୟ ଭୋଗର ଏକ ଏକ ମାର୍ଗ । ଜୀବାତ୍ମା ଅବିଦ୍ୟା ଯୋଗରେ ଜୀବ ରୂପ ଧାରଣ କରେ ଓ ଏହି ଚତୁଃ ଅନ୍ତଃକରଣୀୟ ମାନଙ୍କ ସାହାଯ୍ୟରେ ତନ୍‌ମାତ୍ରା ଯୁକ୍ତ ହୋଇ ବିଷୟ ଭୋଗ କରିଥାଏ । ପ୍ରାଣ ବନ୍ଧନରେ ଏମାନେ ଏକ ଏକ ସୂତ୍ର ତୁଲ୍ୟ ଅଟନ୍ତି ।

ଓଁ

ମହତ୍ତୀ ଜାୟାର ଏ ଗଳାମଳା
ନୂଆ ରସେ ବାସ ଚହଟି ଗଲା ॥

\+ \+ \+

ମହତ୍ତ ଜାୟାର = ପର ପ୍ରକୃତିରେ
ଏ ଗଳା ମାଳା — ଏଣ୍ଟ (ମାୟା) ମାନଙ୍କରେ
ଆରୂଢ଼ ହୋଇ ଅପର ପ୍ରକୃତିରେ କ୍ରିୟା ସମ୍ପା-
ଦନ କରେ
ନୂଆ ରସେ ବାସ = ତତ୍ତ୍ୱ ରସ ଆସ୍ୱାଦାନ
ଚହଟି ଗଲା = ଜଗତ୍ ଭରି ଗଲା

ଏ ଚହଟେନ୍ ମାୟା ସମୂହ ଚେତନା ମୟୀ ପ୍ରକୃତିର ଦୃଶ୍ୟମାଳା ଚତୁର୍ଦ୍ଦଶ ଅଷ୍ଟାଙ୍ଗ । ଚେତନା ଏଣ୍ଟ ପଞ୍ଚଟନ୍ ମାୟାରେ ଆରୂଢ଼ ହୋଇ ଅପର ପ୍ରକୃତି ଅର୍ଥାତ୍ ଜଡ଼ ପ୍ରକୃତି କୁ ପୂର୍ଣ୍ଣ ମାୟାରେ ଯେଉଁ କରଥାଏ । ତତ୍ତ୍ୱ ରସ ଆସ୍ୱାଦନର ମାର୍ଗ ଫିଟିଗଲା । ବର୍ତ୍ତମାନ ଜଗତ୍ ତତ୍ତ୍ୱ ଭର ।

ଓଁ

**ଏ ବାସ ବାନ୍ଧିଲେ ରଖି ଯତନେ**
**ଚାରି ବେଦ ଠୁଳ ହୁଏ ସେ ସ୍ଥାନ ॥**

\+ \+ \+

ଏ ବାସ ବାନ୍ଧିଲେ ରଖି ଯତନେ = ଏ ବାସକୁ (ପୁଣ୍ୟ ଗନ୍ଧକୁ ଅର୍ଥାତ୍ (ଶବ୍ଦ, ସ୍ପର୍ଶ, ରୂପ, ରସ ତଥା ଗନ୍ଧକୁ) ଆୟତ୍ତାଧୀନ କରି ରଖିଲେ ଅର୍ଥାତ୍ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ମାନଙ୍କୁ ସଂଯତ ମନର ଅଧୀନରେ ରଖିଲେ ।
ଚାରିବେଦ = ଜ୍ଞାନ ଚତୁଷ୍ଟୟ (ଉପସର୍ଗ ଗୁଡ଼ିକ)
ଠୁଳ ହୁଏ = କେନ୍ଦ୍ରୀଭୂତ ହୋଇ
ସେ ସ୍ଥାନେ-ମହତ୍ ତତ୍ତ୍ୱ ଆଡକୁ ଅଗ୍ରସର ହୁଅନ୍ତି ।

ଏ ପୁଣ୍ୟ ଗନ୍ଧକୁ (ଶବ୍ଦ, ସ୍ପର୍ଶ, ରୂପ, ରସ ଗନ୍ଧାଦି ତନ୍ମାତ୍ରା ମାନଙ୍କୁ ବିବେକାନୁରାଗୀ କରି କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ମାନଙ୍କ ଉପରେ ସଂଯତ ମନର ଅଧିକାର ଆରୋପ କଲେ ଜ୍ଞାନ ଚତୁଷ୍ଟୟ ଅର୍ଥାତ୍ ଉପସର୍ଗ ସମୂହ ଏକ ରସ ସୂତ୍ରରେ କେନ୍ଦ୍ରୀଭୂତ ହୋଇ ମହତ୍ ତତ୍ତ୍ୱ ଆଡକୁ ଅଗ୍ରସର ହୁଅନ୍ତି ।

ଓଁ

ତ୍ରିବେଦ ଯହିଁ ହୁଅଇ ଠୁଳ
ତହିଁ ତିନଗୁଣ ସଂଗମେ ମେଳ ॥

\+ + +

ତ୍ରିବେଦ ଯହିଁ = ଯେଉଁଠାରେ ଜ୍ଞାନ ଚତୁଷ୍ଟୟ
ହୁଅଇ ଠୁଳ—ଏକତ୍ରୀକରଣ ହୁଏ
ତହିଁ—ସେହି ସ୍ଥାନରେ। ଅର୍ଥାତ୍ ସେହି ଜ୍ଞାନ
ରୂପୀ ସରସୀର
ତିନଗୁଣ—ସତ୍ତ୍ୱ, ରଜ, ତମ (ଅ+ଉ+ମ)
ସଂଗମେ ମେଳ – ମହାକାଶରେ ମହାନାଦର
ମହତ୍ତ୍ୱ ପ୍ରକାଶ ଘଟେ।

ଯେଉଁଠାରେ ଜ୍ଞାନ ଚତୁଷ୍ଟୟର ଏକତ୍ରୀକରଣ ହୁଏ, ସେହି ସ୍ଥାନରେ ଅର୍ଥାତ୍ ସେହି ଜ୍ଞାନ ରୂପୀ ସରସୀରେ ସର୍ବୋପରି ମହାଅନ୍ତରୀକ୍ଷରେ ତ୍ରିଗୁଣାତ୍ମିକା ସତ୍ତ୍ୱ ରଜ ଓ ତମର ସମାହାର (ଅ+ଉ+ମ) ଏହି ଅବ୍ୟକ୍ତ ଅନାହତ ନାଦ ବ୍ରହ୍ମଦ୍ୱାରରେ ତଦ୍‌ଗତ ଚିତ୍ତ ହିଁ ଶ୍ରବଣ କରିଥାଏ।

ଓଁ

**ମହାବେଳ ମିଶେ ମହ ସଙ୍ଗରେ**
**ମହତ ମିଶଇ ସତ୍ୟର ଧାରେ ॥**

+ + +

ମହାବେଳ = ମହାନାଦ, ବ୍ରହ୍ମନାଦ, ଓଁକାର
ମିଶେ—ଯୋଗହୁଏ । ମହସଙ୍ଗରେ – ଅର୍ଦ୍ଧମାତ୍ର
ସଙ୍ଗରେ ( ମହାଶକ୍ତି ସଙ୍ଗରେ ) ସର୍ବୋଚ୍ଚ
ଆଦ୍ୟଶକ୍ତି ସଙ୍ଗରେ ।
ମହତ ମିଶଇ—ମହାଶକ୍ତି ଯୋଗ ହୁଏ
ସତ୍ୟର ଧାରେ – ଓଜ, ପରମ ତେଜ, ପୂର୍ଣ୍ଣ-
ଜ୍ୟୋତି, ସତ୍‌ଚିତ୍ ଆନନ୍ଦର ଘନୀଭୂତ ଅବସ୍ଥା
ସଙ୍ଗରେ

ଗୁଣ ସମୂହର ଲୟ ସଙ୍ଗେସଙ୍ଗେ ଏକମାତ୍ର ନାଦ
ଓଁକାର ରୂପେ ବର୍ତ୍ତମାନ ଥାଏ । ଏହି ସୂକ୍ଷ୍ମତତ୍ତ୍ୱ
ବ୍ରହ୍ମନାଦ ଓଜମୟ ଶରୀରର ମହାଶକ୍ତି ଅର୍ଦ୍ଧକୁ
(ଅର୍ଦ୍ଧମାତ୍ର) ଅର୍ଦ୍ଧକୁ ଧାବିତ ହୁଏ ଓ ସର୍ବୋଚ୍ଚ
ମହତ୍ ଶକ୍ତିରେ ଯୋଗ ହୁଏ । ବର୍ତ୍ତମାନ ଜଗତ୍
କେବଳ ପରମ ନାଦମୟ । ଏହା ସତ୍ୟାଧାର ସତ୍
ଚିତ୍ ଆନନ୍ଦ ଘନର ପରମ ଗୋପନ ସ୍ଥାନ ।

ଓଁ

**ସତ୍ୟ ଆଧାର ସେ ଜଗଜ୍ଜନନୀ**
**କୋଳେ ରମେ ଶୁଭ୍ର ଅମୂଲ୍ୟ ମଣି ॥**

+ + ×

ସତ୍ୟ ଆଧାରେ—ସତ୍ୟର ଆଧାରରେ (ସତ୍ୟ ଯେଉଁଠାରେ ଆଧାରଭୂତ ହୁଏ) ଅର୍ଥାତ୍ ପ୍ରତିଷ୍ଠିତ ହୁଏ ।

ସେ ଜଗଜ୍ଜନନୀ—ସତତ ଘୂର୍ଣ୍ଣାୟମାନ ଅର୍ଥାତ୍ ପରିଭ୍ରମଣଶୀଳ ଯେଉଁ ଜଗତ୍ (ଗମ+ଜ)ତାର ଜନନୀ, ସେ ଜଗଦମ୍ବା ସର୍ବୋପରି ଜଗଦ୍ଧାତ୍ରୀ ଜଗତ୍ ଧାରଣ କାରିଣୀ ।

କୋଳେ ରମେ — କ୍ରୋଡ଼ରେ ରମଣ କରେ ମହାନ୍ "ମୁଁ" ଯେଉଁ ମହାଶକ୍ତି କୁ ଯେଉଁ "ଈ" କୁ ବହନ କରେ ।

ଶୁଭ୍ର ଅମୂଲ୍ୟ ମଣି—ତାହା ପରମ ଜ୍ୟୋତି ।
ଯୋଗୀ ହୃଦୟର ଆତ୍ମାରାମ । ଆତ୍ମାରେ ରମଣ କାରୀ ମହତ୍ ଅବଶେଷ ସତ୍ତ୍ୱ ବା ପୂର୍ଣ୍ଣ ଲକ୍ଷ୍ୟ

ପରମ ସତ୍ୟ ଯେଉଁଠାରେ ଆଧାରୀଭୂତ ହୁଏ ଅର୍ଥାତ୍ ସ୍ଥିର ରହେ, ତାହାହିଁ ଜଗତ୍ ଜନନୀର ମହିମାମୟ କ୍ରୋଡ଼, ଯାହା କେହି ଜାଣି ପାରନ୍ତି ନାହିଁ । ଏହି ସ୍ଥାନରେ ହିଁ ଯୋଗାନନ୍ଦ ସ୍ୱାମୀ ପରମ ଯୋଗାନନ୍ଦ (ଯୋଗ ନିଦ୍ରାରେ ) ପରମ ଯୋଗାଭୂତ ଅବସ୍ଥାରେ ବିଶ୍ରାମ କରି ଥାଆନ୍ତି । ଜଗତ୍ ମାତାର କୃପାବିନା ଏହି ପରମ କ୍ରୋଡ଼ରେ ଶୋଭିଷ୍ଣୁମାନ ଦୃଷ୍ଟି ଜ୍ୟୋତି ଆତ୍ମାରାମର ଦର୍ଶନ ଲଭ ବିଡ଼ମ୍ବନା ମାତ୍ର

ଓଁ

**ଅଛୁ ମହତ୍ତର ଦୁଇ ପ୍ରକାଶ**
**ଅନ୍ତରଙ୍ଗା ବହିରଙ୍ଗାର ରସ ॥**

\+ \+ \+

ଅଛୁ—ବିଦ୍ୟମାନ

ମହତ୍ତର—ମହତ୍ ତତ୍ତ୍ୱର

ଦୁଇ—ଦୁଇ ପ୍ରକାର

ପ୍ରକାଶ—ବିକାଶ

ଅନ୍ତରଙ୍ଗା—ତତ୍ତ୍ୱର ଅନ୍ତର୍ଭାଗ । ସୂକ୍ଷ୍ମାତିସୂକ୍ଷ୍ମ ।
ଇନ୍ଦ୍ରିୟ ମାନଙ୍କର ଯାହା ଗୋଚରୀଭୂତ ନୁହେଁ ।
ଅବ୍ୟକ୍ତ ତଥା ଅଦୃଷ୍ଟ

ବହିରଙ୍ଗା—ତତ୍ତ୍ୱର ବହିର୍ଭାଗ । ଅତି ସ୍ଥୂଳ ବ୍ୟକ୍ତ
ତଥା ଦୃଷ୍ଟ
ଇନ୍ଦ୍ରିୟ ମାନଙ୍କର ଯାହା ଗୋଚରୀଭୂତ

ରସ = କ୍ରୀଡ଼ା, ଜଗତ୍ ପରିଚାଳନାର ନିୟମ
ନିୟନ୍ତ୍ରିତ ହୁଏ ।

ମହତ୍ ପୁରୁଷ ସଦାନନ୍ଦ ଘନ ର ଦୁଇଗୋଟି ମହାମୂ ପରମ ପ୍ରକାଶ ରହିଅଛି । ପ୍ରଥମଟି ଅନ୍ତରଙ୍ଗା ପରମ ତତ୍ତ୍ୱର ଅନ୍ତର୍ଭାଗ ଗୋପନ ତତ୍ତ୍ୱର ଅନ୍ତର୍ଭାଗ ଓ ଦ୍ୱିତୀୟଟି ବହିର୍ଭାଗ ସୂକ୍ଷ୍ମ ଓ ସ୍ଥୂଳ ଇନ୍ଦ୍ରିୟମାନଙ୍କ ଗୋଚରୀଭୂତ ତତ୍ତ୍ୱର ବହିର୍ଭାଗ । ଅନ୍ତର୍ଭାଗ ବହିର୍ଭାଗ ଉପରେ ସତତ କ୍ରିୟାଯୁକ୍ତ ଅଟେ ।

ଓଁ

ଅନ୍ତର୍ଲିଙ୍ଗ ବହିର୍ଲିଙ୍ଗ ଏ କହି
ସ୍ଥୂଳ ସୂକ୍ଷ୍ମ ଭେଦ ଭାବକୁ ବହି ।

\+ + +

ଅନ୍ତର୍ଲିଙ୍ଗ — ସୂକ୍ଷ୍ମାତିସୂକ୍ଷ୍ମ ଲିଙ୍ଗ ପୁରୁଷ (ପୁରୁଷାକାର ଓଜ ଶକ୍ତି).

ବହିର୍ଲିଙ୍ଗ—ବିଶେଷ ସ୍ଥୂଳ ରୂପ ଲିଙ୍ଗ ପୁରୁଷ (ପୁରୁଷାକାର ଓଜ ଶକ୍ତି)

ଏ କହି—ଏ କଥିତ ଦ୍ୱୟ । ସ୍ଥୂଳ = ଚିନ୍ମୟ ବିରାଟ ପୁରୁଷର ସଂଜ୍ଞା ।

ସୂକ୍ଷ୍ମ—ଚିତ୍ମୟ ଲଘୁ ପୁରୁଷର ସଂଜ୍ଞା ।

ଭେଦ—ବିଭାଗ ।

ବହି—ବହନ କରି ।

ଏ ଉଭୟ ତତ୍ତ୍ୱ ଅନ୍ୟ ଦୁଇ ଗୋଟି ନାମରେ ନାମିତ ଅଟନ୍ତି । ଅନ୍ତର୍ଲିଙ୍ଗ ଓ ବହିର୍ଲିଙ୍ଗ । ଅନ୍ତର୍ଲିଙ୍ଗ ସୂକ୍ଷ୍ମାତିସୂକ୍ଷ୍ମ ଲିଙ୍ଗ ପୁରୁଷର ଓଜ ଓ ବହିର୍ଲିଙ୍ଗ ବିଶେଷ ସ୍ଥୂଳ ପୁରୁଷଙ୍କର ଓଜ । ସ୍ଥୂଳ ଚିନ୍ମୟ ବିରାଟ ପୁରୁଷର ସଂଜ୍ଞା ଓ ସୂକ୍ଷ୍ମ ଚିତ୍କାୟ ଲଘୁ ପୁରୁଷର ସଂଜ୍ଞା ଏକ ଅନ୍ୟର ପରିପୂରକ । ଜଗତ୍ ରକ୍ଷା କାରକ ଧର୍ମ ଅଟନ୍ତି ।

ଓଁ

ଦର୍ପଣେ ପ୍ରତି,ପ୍ରତିବିମ୍ବ ଏ ବେନି
କିମ୍ବା ନୀରେ ଭାନୁ ଭାନୁ ଫଳନୀ ॥

\+ \+ \+

ଦର୍ପଣେ—ଦର୍ପଣରେ

ପ୍ରତି – ସୂକ୍ଷ୍ମ ଅବ୍ୟକ୍ତ

ପ୍ରତିବିମ୍ବ—ଛାୟା, ଫଳକ, ବ୍ୟକ୍ତ

ଏ ବେନି—ଉଭୟେ

କିମ୍ବା – ପକ୍ଷାନ୍ତରେ

ନୀରେ – ସୁ ନିର୍ମଳ ଜଳ ରାଶି ଉପରେ

ଭାନୁ—ଦିବାକର (ସୂର୍ଯ୍ୟ) ରବି

ଭାନୁ ଫଳନୀ—ରବି ପ୍ରତିବିମ୍ବ ପରି ଅଟେ ସ୍ଥୂଳ ଓ ସୂକ୍ଷ୍ମର ବିସ୍ତରଣ।

ପୂଣ୍ୟ ଦର୍ଶନ ଶାସ୍ତ୍ରରେ ଏ ଉଭୟ ତତ୍ତ୍ୱ, ତତ୍ତ୍ୱ ଓ ତତ୍ତ୍ୱାର୍ଥ ରୂପ ଅଟନ୍ତି । ଅର୍ଥାତ୍ ଦର୍ପଣରେ ପ୍ରତି ଓ ପ୍ରତିଫଳିତ ପ୍ରତିବିମ୍ବ ସ୍ୱରୂପ ଅଟେ । ପକ୍ଷାନ୍ତରେ ସୁନିର୍ମଳ ଜଳରଶି ଉପରେ ଦୃଶ୍ୟମାନ ଭାସ୍କର ଓ ଭାସ୍କର ପ୍ରତିବିମ୍ବ ସ୍ୱରୂପ ଯେଉଁ ମହତ୍ ତତ୍ତ୍ୱ ତାହା ଏକ ଅବିଚ୍ଛେଦ୍ୟ ହିଁ ଅଟେ । ସ୍ଥୂଳ ଓ ସୂକ୍ଷ୍ମର ବିସ୍ତରଣ ଯୋଗ ମାୟାର ଅବ୍ୟକ୍ତ ମାୟାରେ ବ୍ୟକ୍ତ ମାତ୍ର ।

ଓଁ

## ବିରାଟ ପୁରୁଷ ବହିରଙ୍ଗରେ
## ସଂଗ୍ରହୀ ଭାବକୁ ଧାରଣ କରେ ॥

+ + +

ବିରାଟ ପୁରୁଷ—ସ୍ଥୂଳ ବ୍ରହ୍ମ । ବହିରଙ୍ଗରେ-
ଚତ୍ୱର ବହିର୍ଭାଗରେ ।
ସଂଗ୍ରହୀ ଭାବକୁ—ସଂଚରଣ ଭାବକୁ ( କ୍ରିୟା
କୁଶଳତା ନିପୁଣ ଭାବକୁ) ଚରାଚର ଜଗତର
ପ୍ରକାଶ ନିମିତ୍ତ ॥
ଧାରଣା କରେ--ଅଗ୍ନି ଓ ସୋମକୁ ଧାରଣ କରେ
(ଶକ୍ତି ଓ ଆଲୋକକୁ ଧାରଣ କରେ )

ସ୍ଥୂଳ ବ୍ରହ୍ମ, ବିରାଟ ପୁରୁଷ ବହିରଙ୍ଗରେ ଅର୍ଥାତ୍ ଚତ୍ୱର ବହିର୍ଭାଗରେ ଚରାଚର ଜଗତର ପ୍ରକାଶ ନିମିତ୍ତ ସଂଗ୍ରହୀ (କ୍ରିୟା କୁଶଳତା ନିପୁଣ) ଭାବକୁ ଧାରଣ କରେ । ଏହା ଅଗ୍ନି ଓ ସୋମର ଯୁଗ୍ମାବସ୍ଥା ଅର୍ଥାତ୍ ଶକ୍ତି ଓ ଆଲୋକମୟ ସର୍ବୋପରି ଏହାର ଅନ୍ୟନାମ ପ୍ରାଣ ଓ ପ୍ରକାଶ ହିଁ ଅଟେ ॥

ଓଁ

**ମାତ୍ର ସ୍ଥିର ସେହି ଲିଙ୍ଗ ପୁରୁଷ**
**ସଂଗ୍ରାହ, ନିଗ୍ରହ ସେ ଅବଶେଷ ॥**

\+ \+ \+

ମାତ୍ର ସ୍ଥିର ସେହି — ମାତ୍ର ଅନ୍ତରଙ୍ଗା ପ୍ରକାଶ
ଚେତନ ତତ୍ତ୍ୱର ଅନ୍ତର୍ଗତ ପରମ ସ୍ଥିର ସନାତନ
ସ୍ୱରୂପ।
ଲିଙ୍ଗ ପୁରୁଷ—ଏହା ଜ୍ୟୋତିର୍ଲିଙ୍ଗ
ସଂଗ୍ରହ—ରଚନାତ୍ମିକା
ନିଗ୍ରହ—ଲୟାତ୍ମିକା । ଉଭୟେ
ସେ—ପରମ ତତ୍ତ୍ୱ
ଅବଶେଷ-ଅବଶିଷ୍ଟମାତ୍ର(ଅର୍ଥାତ୍ ଗ ଓ ମ ମାତ୍ର)

ମାତ୍ର ଅନ୍ତରଙ୍ଗା ପ୍ରକାଶ ତତ୍ତ୍ୱର ଅନ୍ତର୍ମୁଖୀ ସ୍ୱର ପରମ ସ୍ଥିର ଓ ସନାତନ । ଏହା ଜ୍ୟୋତିର୍ଲିଙ୍ଗ । ଏହା ରଚନାତ୍ମିକା ଓ ଲୟାତ୍ମିକା ଉଭୟ ମହାଶକ୍ତିର ଅବଶେଷ ମାତ୍ର । ଏହି ବ୍ରହ୍ମଜ୍ୟୋତି ସଚ୍ଚିଦାନନ୍ଦ ଘନ ପରମ ସୁନ୍ଦର ତମ ଅଟନ୍ତି ।

ଓଁ

ଏ ଲିଙ୍ଗ ପୁରୁଷେ ଜାଣିବା କଷ୍ଟ
ଯାହାପାଇଁ ଅଛି ସେ ବିଦ୍ୟା ଅଷ୍ଟ ॥

+ + +

ଏ ଲିଙ୍ଗ ପୁରୁଷେ—ଏହି ଜ୍ୟୋତିର୍ଲିଙ୍ଗଙ୍କୁ
ଜାଣିବା— ଲକ୍ଷ୍ୟ ହେବା ( ସାରୂପ୍ୟ; ସାଯୁଜ୍ୟ,
ସାଲୋକ୍ୟ) ଜାଣିବାର ତିନୋଟି ପର୍ଯ୍ୟାୟ
କଷ୍ଟ—ଅତୀବ ଦୁରୂହ
ପରମ ଯୋଗରେ ମଧ୍ୟ ଯାହା ଜଣାପଡ଼େ ନାହିଁ
ଜନ୍ମ ଜନ୍ମାନ୍ତର ର ତପ ନିଷ୍ଠା ଯାହାର ସୀମା
ସ୍ପର୍ଶ କରି ପାରେ ନା । କେବଳ ଅହେତୁକ
କୃପାହିଁ ଏକମାତ୍ର ଅବଲମ୍ବନ ।
ଯାହା ପାଇଁ ଅଛି—ଏହି ପରମ କୃପା ଲାଭ ନିମିତ୍ତ
ସେ ବିଦ୍ୟା ଅଷ୍ଟ :— ୧-ଯମ, ୨-ନିୟମ, ୩-
ଆସନ, ୪-ପ୍ରାଣାୟାମ; ୫-ପ୍ରତ୍ୟାହାର, ୬-
ଧାରଣା, ୭-ଧ୍ୟାନ, ୮-ସମାଧି

ଏହି ବ୍ରହ୍ମଜ୍ୟୋତିକୁ ଲକ୍ଷ୍ୟ ହେବା ଅତୀବ ଦୁରୂହ ।
ପରମ ଯୋଗରେ ମଧ୍ୟ ଯାହା ଜଣାପଡ଼େ ନାହିଁ ।

ଅପିତୁ ଜନ୍ମ ଜନ୍ମାନ୍ତର ର ତପନିଷ୍ଠା ଯାହାର ସୀମା ପୂର୍ଣ କରିପାରେ ନା । ଯାହାକୁ ଜାଣିବାକୁ ହେଲେ କରୁଣା ବରୁଣାଳୟଙ୍କ ଅହେତୁକ କୃପାହିଁ ଏକମାତ୍ର ଅବଲମ୍ବନ । କେବଳ ସେ ଯେ ଚରମ ସତ୍ୟ ଏହା ଉପଲବ୍‌ଧି ପାଇଁ ଅଷ୍ଟାଙ୍ଗ ଯୋଗର ଆଶ୍ରୟ ନେବାକୁ ହୁଏ ।

ଓଁ

ଅତି ଗହନ ସେ କଳି ପାରଇ
ତପ ବଳେ ସିଦ୍ଧି ଯେ ଅଛି ପାଇ ॥

\+ \+ \+

ଅତିଗହନ— ଯାହା ସହଜ ସାଧ୍ୟ ନୁହେଁ
ସେ—ମହାପୁରୁଷ, ପୁଣ୍ୟାତ୍ମା, ଦୁର୍ଲଭ ଜନ୍ମା ।
କଳି ପାରଇ – ପରମ ତତ୍ତ୍ୱକୁ ହୃଦୟଙ୍ଗମ କରି-
ପାରଇ । ଆତ୍ମାରାମରେ ରମି ପାରେ ।
ତପ ବଳେ — କଠୋର ତପସ୍ୟାରେ ଯାର
ଅନ୍ତଃକରଣୀସ୍ଥ ଆତ୍ମତତ୍ତ୍ୱ ଲାଭ କରିଅଛି ।
ସିଦ୍ଧି =ଅମୃତ ଧାର (ପରମ କୃପା)
ଯେଅଛି ପାଇ – ଯେ ଲାଭ କରିଅଛି ।

ଯେଉଁ ଦୁର୍ଲଭ ଜନ୍ମା ପୁଣ୍ୟାତ୍ମାର କଠୋର ତପୋ-
ବଳରେ ତତ୍ତୁସ୍ ଅନ୍ତଃକରଣୀସ୍ଥ ବିଶୁଦ୍ଧ ହୋଇଅଛି
ସେହି ଏହି ସାଧ୍ୟାତୀତ ପୁଣ୍ୟ ଜ୍ୟୋତିର(ଅମୃତଧାର)
ପରମ ପ୍ରକାଶ କୁ ହୃଦୟଙ୍ଗମ କରିପାରେ । ଅର୍ଥାତ୍
ଆତ୍ମା ରାମରେ ରମି ପାରେ

ଓଁ

**ଷଠି କୋଠି କାଟି ଦର୍ଶନା ଜାର**
**ଦେଇ ଯାଇଛନ୍ତି ଯୋଗ ବଜ୍ର ॥**

+ + +

ଷଠି କୋଠି କାଟି—ଷଡ଼୍ ଦର୍ଶନ (ଯୋଗସୂତ୍ର)
ଦର୍ଶନାକାର — ଦର୍ଶନର ନିର୍ମାତା । (ବ୍ରହ୍ମ
ସାକ୍ଷାତ୍ କାର ଋଷି ନିଚୟ)
ଦେଇ ଯାଇଛନ୍ତି —ପ୍ରଦାନ କରି 'ଅନନ୍ତ
ଯୋଗ ବଜ୍ରର— ବ୍ରହ୍ମଧାରଣାର ଉପାୟ (ମାର୍ଗ)
୧- ମୀମାଂସା, ୨- ନ୍ୟାୟ, ୩- ବୈଶେଷିକ
୪-ଯୋଗ, ୫-ସାଂଖ୍ୟ, ୬-ବେଦାନ୍ତ

ଏହି ପରମ ତତ୍ତ୍ୱର ଅବଧାରଣ ପାଇଁ ମହତ୍ ଦର୍ଶନର ନିର୍ମାତା (ବ୍ରହ୍ମ ସାକ୍ଷାତ୍କାର ଋଷି ନିଚୟ) ଯୋଗ ସୂତ୍ର ରୂପୀ ଷଡ଼୍ ଦର୍ଶନର ନିର୍ମାଣ କରି ଯାଇ ଅଛନ୍ତି । ଯାହାର ଉଚିତ ବଜ୍ରଯୋଗରେ ବ୍ରହ୍ମ ଧାରଣାର ମହତ ମାର୍ଗ ଲାଭ ହୁଏ ।

ଓଁ

**ମହାଶୂନେ ଶୂନ ମିଶିଲେ ଶୂନ
ବିୟୋଗରେ କେବେ ନୁହେଁ ନିଉନ ॥**

\+ \+ \+

ମହାଶୂନେ ଶୂନ — ମହାଶୂନ୍ୟରେ । ଶୂନ୍ୟ ମିଶିଲେ ମହାଶୂନ୍ୟରେ ଶୂନ୍ୟ ଯୋଗ ହେଲେ ଶୂନ୍ୟ—କେବଳ ମହାଶୂନ୍ୟ ଲବ୍ଧ ହୁଏ

ପରମ ତତ୍ତ୍ୱରେ ପରମ ତତ୍ତ୍ୱର ମିଶ୍ରଣ ପରମ ତତ୍ତ୍ୱହିଁ ଲବ୍ଧ ହୁଏ

ବିୟୋଗରେ କେବେ ନୁହେ ନିଉନ-ମହାଶୂନ୍ୟରୁ ମହାଶୂନ୍ୟକୁ ବିୟୋଗ କଲେ ମଧ୍ୟ ମହା ଶୂନ୍ୟହିଁ ଲବ୍ଧ ହୁଏ । ଅର୍ଥାତ୍ ପରମ ତତ୍ତ୍ୱରୁ ପରମ ତତ୍ତ୍ୱକୁ ଛେଦନ କଲେ ପରମ ତତ୍ତ୍ୱହିଁ ବିଦ୍ୟମାନ ଥାଏ ।

ଓଁ ପୂର୍ଣ୍ଣମଦଃ, ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ

ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବା ବଶିଷ୍ୟତେ । ପରମ ତତ୍ତ୍ୱରେ ପରମ ତତ୍ତ୍ୱର ମିଶ୍ରଣ ହେଲେ ଫଳତଃ ପରମ ତତ୍ତ୍ୱହିଁ ଲବ୍ଧ ହୁଏ । ପୁନଶ୍ଚ ପରମ ତତ୍ତ୍ୱରୁ ପରମ ତତ୍ତ୍ୱକୁ ଛେଦନ କଲେ ଫଳତଃ ପରମ ତତ୍ତ୍ୱହିଁ ଅବଶେଷ ରହେ । ସତ୍ୟର ବିୟୋଗ ଏହି ପୂର୍ଣ୍ଣ ସତ୍ୟ ।

ଓଁ

ଶୂନେ ଶୂନେ ଗୁଣି ଶୂନହିଁ ଲଭ
ଭାଗ ବର୍ଗରରେ ଶୂନ୍ୟହିଁ ଠାବ ॥

\+ + +

ଶୂନେ ଶୂନ ଗୁଣି—ମହାଶୂନ୍ୟରେ ମହଶୂନ୍ୟର ଯଦି ଗୁଣ ଆର୍ଜନ କରାଯାଏ, ତାହା ଅପରି-ବର୍ତ୍ତନୀୟ
ଶୂନ୍ୟହି ଲଭ—ଅର୍ଥାତ୍ ମହାଶୂନ୍ୟହିଁ ଲାଭ ହୁଏ ଭାଗ ବର୍ଗରରେ — ଯଦ୍ୟପି ମହତ ଶୂନ୍ୟକୁ ଯଦି ଖଣ୍ଡ ବିଖଣ୍ଡ କରାଯାଏ, ତେବେ ସମପରିମାଣ (ପୂର୍ବବତ) ମହାଶୂନ୍ୟହିଁ ବିଦ୍ୟମାନ । ପୂର୍ଣ୍ଣ ପୂର୍ଣ୍ଣହିଁ ରହେ । ପୂର୍ଣ୍ଣ ସର୍ବଶେଷ ତଥା ପୂର୍ଣ୍ଣ ଅବଶେଷ । ପୂର୍ଣ୍ଣ ଆଦି ଅନ୍ତ ଶୂନ୍ୟ ଅର୍ଥାତ୍ ମହାଶୂନ୍ୟ—ନିରାଧାର ଅଟେ ।

ପରମ ତତ୍ତ୍ୱରେ ପରମ ତତ୍ତ୍ୱର ନିପୁଣ ଦର୍ଶନରେ ଉଦ୍ଭବ ସ୍ଫୁଲିଙ୍ଗ ହିଁ ପରମ ତତ୍ତ୍ୱ ପୁନଃ ତତ୍ତ୍ୱକୁ ଶତଧା ବିଦୀର୍ଣ୍ଣ କଲେ ଫଳତଃ ଏକପୂର୍ଣ୍ଣ ସତ୍ୟ ଲାଭହୁଏ ପୂର୍ଣ୍ଣ ଆଦି, ଅନ୍ତ ଓ ମଧ୍ୟ, ପୂର୍ଣ୍ଣ ଅସୀମ ଓ ସସୀମ ପୂର୍ଣ୍ଣ ପରିଦୃଶ୍ୟ ମାନ ଓ ଅପରିଦୃଶ୍ୟ ମାନ ପୂର୍ଣ୍ଣ ସ୍ଥୂଳ ଓ ସୂକ୍ଷ୍ମ ପୂର୍ଣ୍ଣ ପରିମିତ ଓ ଅପରିମିତ ପୂର୍ଣ୍ଣ ବିନ୍ଦୁ ନାଦାତ୍ମିକା ହବୋଦେଶ ପୂର୍ଣ୍ଣହିଁ ପୂର୍ଣ୍ଣ ସଚ୍ଚିଦାନନ୍ଦ ଘନ ସ୍ୱରୂପ ।

ଓଁ

## ନଅ ଅଙ୍କ ଲେଖା ମହା ଶୂନ୍ୟରେ
## ନଅ ଅଙ୍କ ରଖି ଶୂନ୍ୟକୁ ଧରେ ॥

+ + +

ନଅ ଅଙ୍କ ଲେଖା—ସ୍ଥୂଳ ବ୍ରହ୍ମର ନବଧା ଗତ

ମହାଶୂନ୍ୟରେ—ଅତ ସୂକ୍ଷ୍ମରେ

ନଅ ଅଙ୍କ ରଖି—ବରାଟ ପୁରୁଷର ସଂଜ୍ଞା

ଶୂନ୍ୟକୁ ଧରେ— ମହାଶୂନ୍ୟକୁ ଧାରଣ କରେ

ଅର୍ଥାତ୍ ଅବ୍ୟକ୍ତରୁ ବ୍ୟକ୍ତ ପୁନଃ ବ୍ୟକ୍ତରୁ ଅବ୍ୟକ୍ତ

୧- ଅଦ୍ୱୈତ, ୨- ଦ୍ୱୈତ, ୩- ତ୍ରିଗୁଣାତ୍ମିକା

୪-ଉପସର ଚତୁଷ୍ଟୟ, ୫—ତନମାତ୍ରା ଯୁକ୍ତ

୬-ଷଟଚକ୍ର (ଷଡ଼ ଦର୍ଶନ), ୭-ସପ୍ତବ୍ୟହୃତ,

୮-ଅଷ୍ଟାଙ୍ଗ (ଅଷ୍ଟାଙ୍ଗ ଯୋଗ), ୯-ନବଧା ଭକ୍ତି

ସ୍ଥୂଳ ବ୍ରହ୍ମର ନବଧାଗତ ଏକ ସୂକ୍ଷ୍ମ ମାର୍ଗାଙ୍କିତ । ଏହା ବିରାଟ ପୁରୁଷର ସଂଜ୍ଞା । ବିଶ୍ୱ ରୂପ । ଯେଉଁ ମହତ ତତ୍ତ୍ୱ ମହାଶୂନ୍ୟକୁ ଧାରଣ କରେ ଓ ସର୍ବୋପରି ଅବ୍ୟକ୍ତ ସେ ପୁନଃ ମହାଶକ୍ତିର ମର୍ଯ୍ୟାଦାରେ ଯୋଗ ରେଖାରେ ନବରଙ୍ଗ ଭୂମିକାରେ ବିଶ୍ୱ ନିର୍ମାଣ କରେ । ଏହା ତତ୍ତ୍ୱର ବ୍ୟକ୍ତାବସ୍ଥା ।

ଓଁ

## ଷଠି କୋଠି ପାଠ ଦେଲ ବତାଇ
## ଯାହା ଜାଣିଥିଲେ ମରମ କହ୍ନ ॥

+ + +

ଷଠି କୋଠି ପାଠ—ଷଡ଼ ଦର୍ଶନର ସାର ମର୍ମ ବ୍ରହ୍ମ ସାକ୍ଷାତ କାର

ଦେଲ ବତାଇ—ନିରୂପଣ କଲ ଅର୍ଥାତ୍ ଉପସ୍ଥାପିତ କଲ

ଯାହା ଜାଣିଥିଲେ — ଯାହା ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ

ମରମ କହ୍ନ = ତତ୍ତ୍ୱାର୍ଥ ପ୍ରକାଶ କରି ହୁଏ

ଷଡ଼ ଦର୍ଶନର ସାର ମର୍ମ, ବ୍ରହ୍ମ ଧାରଣାର ମହତ୍ ମାର୍ଗରେ ପୂର୍ଣ୍ଣାନନ୍ଦ ଦେହର ନିର୍ଣ୍ଣୟ ପୂର୍ବକ ସଦା କାଳରେ ଉପାସ୍ଥାପିତ କଲ । ଗୁରୁ କୃପାରୁ ଯାହା ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ, ତତ୍ତ୍ୱାର୍ଥ ପ୍ରକାଶ କରି ହୁଏ । ଅର୍ଥାତ୍ ଜ୍ଞାନ ନିର୍ମଞ୍ଜ ମହାବର୍ଣ୍ଣ "ନ" କେଉଁଠି ଭ୍ରମଣ କରେ ଉପଲବ୍ଧି କରି ହୁଏ ।

ଓଁ

# ବହୁରଙ୍ଗା ଭାନୁ ସପତ୍ତ ବର୍ଣ୍ଣ
# ଅଗ୍ନି ସୋମାତ୍ମିକା ଜଗତ କର୍ଣ୍ଣ ॥

+ + +

ବହୁରଙ୍ଗା—ବ୍ରହ୍ମର ବହୁଃ ପ୍ରକାଶ । ଭାନୁ=
ସବିତା ସପତ ବର୍ଣ୍ଣ—ଯାହାର ସାତୋଟି ରଙ୍ଗ
ଅଛି ଅର୍ଥାତ୍ ଲୋକ ଅଛି
ବ୍ରହ୍ମ ଗାୟତ୍ରୀ—ଅଗ୍ନି=ପ୍ରାଣ
ସୋମାତ୍ମିକା—ପ୍ରକାଶ ମୟ
ଜଗତ କର୍ଣ୍ଣ=ଜଗତର ଆଧାର, ଜଗତ୍ପ୍ରାଣ
ପକ୍ଷାନ୍ତରେ ସ୍ଥୂଳ ଚକ୍ଷୁରେ ସବିତା ସପ୍ତ ବର୍ଣ୍ଣ
ସପ୍ତବର୍ଣ୍ଣର ସମାହାର ପରମ ତେଜ ।

ବ୍ରହ୍ମର ବହୁଃପ୍ରକାଶ ହବାକର । ଯାହାର ସାତୋଟି
ରଙ୍ଗ ବା ଅନେକ ସତତ ବର୍ଦ୍ଧମାନ । ପକ୍ଷାନ୍ତରେ
ସପ୍ତଲୋକରେ ଯେ ବର୍ଣ୍ଣିତ (ବ୍ରହ୍ମ ଗାୟତ୍ରୀ ଯୁକ୍ତ)
ଯେଉଁ ପ୍ରାଣାଧାର ମହତ ପ୍ରକାଶ ମୟ ପିଣ୍ଡ । ଯାହାର
ଶରୀର ଅଗ୍ନି ଓ ସୋମରେ ନିର୍ମିତ ପରମ ଓଜମୟ
ସେହି ଏହି ଜଗତର କର୍ଣ୍ଣାଧାର ଅଟେ ।

ଓଁ

ସପତ୍ତ ବଳୟେ ଦିଶେ ସୁନ୍ଦର
ଛପତ୍ତ ବଳୟେ ରୁଚିର କର ॥

\+ \+ \+

ସପତ୍ତ ବଳୟେ — ସପ୍ତ ମଣ୍ଡଳରେ
ଦିଶେ ସୁନ୍ଦର — ଶୋଭା ଶ୍ରୀ କୁ ଧାରଣ କରେ
ଚକ୍ର ସପ୍ତ ବଳୟ ପ୍ରକାଶ ମୟ
ଛପତ୍ତ ବଳୟେ – ଅଗ୍ନି ମଣ୍ଡଳରେ
ରୁଚିର କର = ଚରାଚର ଜଗତରେ ଚେତନାର
ଯୋଗ ହୁଏ । ପ୍ରାଣ ପ୍ରକାଶ ହୁଏ ।
ସମାନ୍ୟ ଉପରେ ବିଶେଷର ନିଷ୍ଠା

ପରମ ପ୍ରକାଶ ମୟ ସପ୍ତ ମଣ୍ଡଳରେ ଯେ ଶୋଭା ଶ୍ରୀ କୁ ଧାରଣ କରେ । ଯେ ପ୍ରଚଣ୍ଡ ଜ୍ଞାନାଗ୍ନି ମଣ୍ଡଳ ଯା'ର ରୁଚିରକର ମାଳାର ପରମ ଚେତନାର ଯୋଗ ହୁଏ ଅର୍ଥାତ୍ ପ୍ରାଣ ପ୍ରକାଶ ଘଟେ; ସାମାନ୍ୟ ଉପରେ ବିଶେଷର ନିଷ୍ଠା ସମ୍ଭବ ହୁଏ, ସେହି ଅଂଶୁମାଳୀ ରୁଚିରକର ଅଟେ ।

ଓଁ

**ଏକ ଚନ୍ଦ୍ରରଥେ କରେ ଗମନ**
**ମହା ଅନ୍ତରୀକ୍ଷେ ତା ଅଭିଯାନ ॥**

\+ \+ \+

ଏକଚନ୍ଦ୍ର—ପ୍ରକାଶମୟ ଏକଚନ୍ଦ୍ର (ମଣ୍ଡଳାକାର)
ମଣ୍ଡଳାକାର ଜ୍ୟୋତି
ରଥେ— ଯାନରେ
କରେ ଗମନ—ତାର ଗମନ ହୁଏ
ମହା ଅନ୍ତରୀକ୍ଷେ—ମହାକାଶରେ
ତା ଅଭିଯାନ=(ସମୁଦାୟ ସୌରଜଗତ ଯା'ର ଅଧୀନ) ମହତ ପୁରୁଷର ଦର୍ଶନ ଲାଭ ହୁଏ ।

ପ୍ରକାଶ ମୟ ଏକଚନ୍ଦ୍ର ମଣ୍ଡଳାକାର ମଣ୍ଡଳରେ ଯେଉଁ ଜ୍ୟୋତିର୍ମୟ ଯାନର ଗମନ ହୁଏ । ଅନ୍ତରୀକ୍ଷ ଯା'ର ଅଭିଯାନରେ ସଦା ଜାଜ୍ୱଲ୍ୟ ମାନ । ସେହି ଜ୍ୟୋତିର୍ମୟ ଯାନର ରଥୀ ଅଗ୍ନିବର୍ଣ୍ଣା ପରମ ସୋମ ମହତ୍ ପୁରୁଷ ।

ଓଁ

**ସପ୍ତ ଧାତୁରେ ତା ରଥ ନିର୍ମିତ**
**ସପ୍ତ ଅଶ୍ୱ ଯୋଗ୍ୟ ସୁ ନିୟନ୍ତ୍ରିତ ॥**

\+ \+ \+

ସପ୍ତ ଧାତୁରେ—ସାତୋଟି ଉପାଦାନରେ । ଓଜ ତେଜ, ପ୍ରାଣ ପ୍ରକାଶ, ଶମ, ଦମ, ନିୟମରେ ତାର ରଥ । ନିର୍ମିତ=ତାର ରଥ ନିର୍ମାଣ ହୋଇଅଛି ।

ସପ୍ତଅଶ୍ୱ—ସପ୍ତଅଶ୍ୱ=ସାତୋଟି ତୁରଙ୍ଗମ= (ଘୋଡ଼ା) ଲବ, ମୁହୂର୍ତ୍ତ, ଦଣ୍ଡ, ଦିବସ, ପକ୍ଷ, ମାସ ଓ ସମ୍ବତ୍ସର

ଯୋଗ୍ୟ—ଉତ୍ତମ ରୂପେ ଯୋଗ୍ୟ ( ବନ୍ଧା ) ସୁ ନିୟନ୍ତ୍ରିତ=ହୋଇଅଛି ॥

ସାତୋଟି ଉପାଦାନରେ (ଓଜ, ତେଜ, ପ୍ରାଣ, ପ୍ରକାଶ, ସମ, ଦମ, ନିୟମ) ଏହି ପ୍ରକାଶମୟ ଅପୂର୍ବ ଯାନ ନିର୍ମିତ ହୋଇଅଛି ॥ ଏଥିରେ ଲବ, ମୁହୂର୍ତ୍ତ ଦଣ୍ଡ, ଦିବସ, ପକ୍ଷ, ମାସ ଓ ସମ୍ବତ୍ସର ନାମା ସାତୋଟି ମନୋହର ତୁରଙ୍ଗମ ଉତ୍ତମ ରୂପେ ନିୟୋଜିତ ହୋଇ ଅଛନ୍ତି । ଏହା କାଳର ସଙ୍କ ଅଟେ ॥

ଓଁ

ଡା ଧ୍ୱଜ ଲହର ମହା ଅମ୍ବରେ
ଧରମ ମୁଁ ବୋଲି କହେ ଦମ୍ଭରେ ॥

\+ × +

ଡା ଧ୍ୱଜା ଲହର—ଡା ଯାନର ଉଡ୍ଡୀୟମାନ
ଧ୍ୱଜା ବା ପତାକା ହିରଣ୍ୟ ଗର୍ଭ ।
ମହା ଅମ୍ବରେ—ଅନନ୍ତ ଆକାଶରେ ।
ଧରମ—ଚତୁର୍ବର୍ଗ ପ୍ରାଣୀ ଜଗତର ଧାରକ ।
ମୁଁ ସ୍ୱୟଂ ବୋଲି କହେ ଦମ୍ଭରେ = ଘୋଷଣା
କରୁଅଛି । ଅର୍ଥାତ୍ ପ୍ରତ୍ୟକ୍ଷ ଧର୍ମ ।

ଅନନ୍ତ ଆକାଶରେ ଏହି ହିରଣ୍ୟ ଗର୍ଭ ନାମା ଅପୂର୍ବ
ଜ୍ୟୋତିର୍ମୟ ଯାନର ଉଡ୍ଡୀୟମାନ ଧ୍ୱଜା ମୁଁ ପ୍ରତ୍ୟକ୍ଷ
ଧର୍ମ ବୋଲି ସତତ ଘୋଷଣା କରୁଅଛି ଯେ
ଚତୁର୍ବର୍ଗ ପ୍ରାଣୀ ଜଗତର ପ୍ରାଣାଧାର ସେହି ଧର୍ମ =
ଧ + ର + ମ = ଧର୍ମ ॥

ଓଁ

ତା ରଥ ରୁଚିର ଅନୂରୁ ବାହି
ମହ ମଣ୍ଡଲରେ ବିଏ ବିଜୟାଇ ॥

\+ \+ \+

ତା ରଥ ରୁଚିର—ଏହି ଧର୍ମ ରଥ ଅତି ଅନୁପମ
ଅନୂରୁ—ସୂର୍ଯ୍ୟ ସାରଥୀ (ସାତୋଟି ରଜ୍ଜୁର
ଧାରକ) ମହତ୍ତ୍ୱ ବାହକ ॥
ମହ ମଣ୍ଡଳରେ—ମହାସ୍ଥାନ ମଣ୍ଡଳରେ ରୁଚିର
କିରଣ ମାଳ ମଧ୍ୟରେ ॥
ବିଏ ବିଜୟାଇ—ବିଜୟାଇ ବିଏ (ବିରାଜ ମାନ
କରଏ)

ଏହି ଧର୍ମ ରଥ ଅତ୍ୟନ୍ତ ଶୋଭାସ୍ପୃମାନ । ଅନୂରୁ ସୂର୍ଯ୍ୟ
ସାରଥି (ତତ୍ତ୍ୱାର୍ଥ) ଲମ୍ବାସ୍ପୃମାନ ସାତୋଟି ରଜ୍ଜୁ
ଧାରଣ ପୂର୍ବକ ଏହି ପୂର୍ଣ୍ଣ ରଥକୁ ରୁଚିର କିରଣ
ମାଳା ଯୁକ୍ତ ମହାସ୍ଥାନ ମଣ୍ଡଳରେ ବିରାଜମାନ କରଏ ॥

ଓଁ

**ମହା ପଞ୍ଚଭୂତ ଶିଖି ଶିଖରେ**
**ଚଳେ ଜ୍ଞାନ ରଥ ମହା ଘୋଷରେ ॥**

× + +

ମହା ପଞ୍ଚଭୂତ—କ୍ଷିତି, ଅପ, ତେଜ, ମରୁତ୍ ବ୍ୟୋମ,
ଶିଖି ଶିଖରେ—ଚୂଡ଼ାରେ (ସର୍ବୋପରି) ଚଳାୟମାନ ହୁଏ ॥
ଜ୍ଞାନ ରଥ—ଧର୍ମରଥ (ଯେଉଁ ରଥରେ ଜ୍ଞାନ ବନ୍ଧା)
ମହା ଘୋଷରେ—ଅବ୍ୟକ୍ତ ନାଦରେ ॥

କ୍ଷିତି, ଅପ୍, ତେଜ, ମରୁତ୍ ବ୍ୟୋମର ଚରମ-ଚୂଡ଼ାରେ ଅପୂର୍ବ ଧର୍ମ ରଥ ବଚନ ଶେଷ ଧାରଣ ପୂର୍ବକ ଅବ୍ୟକ୍ତ ନାଦରେ ଚଳାୟମାନ ହୁଏ । ଅଂଶୁମାନର ପରମ ଅଂଶୁମାଳା ପତନରେ ଜଗତ୍ ପୂର୍ଣ୍ଣରସ ପ୍ରାଣାରାମମୟ । ପ୍ରାଣାଗ୍ନି ସୋମାବୃତ ହୁଏ ॥

ଓଁ

**ବେଦ କଣ ପାରେ ମହିମା ତାର**
**ବିରଞ୍ଚି କହିବା କଥା ମାତର ।**

+ + +

ବେଦ—ଜ୍ଞାନ ଗ୍ରନ୍ଥ । କଣପାରେ =ଓଁ
ସୂର୍ଯ୍ୟାୟ ନମଃ । କଳନା କରିବାକୁ ପ୍ରୟାସ
କରେ (ସୂତ୍ରର ମାଧ୍ୟମରେ)
ମହିମାତାର—ଯେଉଁ ଗୋପନ ରହସ୍ୟରେ
ଚିଦାନନ୍ଦ ପ୍ରକାଶ ମାନ ॥
ବିରଞ୍ଚି କହିବା—ସ୍ରଷ୍ଟାର ଇଂଗିତ ॥
କଥା ମାତର—ମୁଁ ରବି ରୂପ ସାକ୍ଷାତ୍ ଧର୍ମ
ପ୍ରତିଦେଷ୍ଟ ବାସୀ ଅଟେ ॥

ଜ୍ଞାନ ଗ୍ରନ୍ଥ ସୂତ୍ରର ମାଧ୍ୟମରେ ଯେଉଁ ଗୋପନ ରହସ୍ୟରେ ଚିଦାନନ୍ଦ ପ୍ରକାଶ ମାନ ସ୍ରଷ୍ଟାର ଇଂଗିତ 'ମ' ରବି ରୂପ ସାକ୍ଷାତ୍ ଧର୍ମ ପ୍ରତିଦେଷ୍ଟ ବାସୀ ଓଁ ସୂର୍ଯ୍ୟାୟ ନମଃ ଏହି ମହାମନ୍ତ୍ରରେ କଳନା କରିବାକୁ ପ୍ରୟାସ କରେ ॥

ଓଁ

## ସମତ୍ୱ ଯୋଗକୁ ଶିଖିଛୁ ସେହୁ
## ଭଲ ମନ୍ଦରେ ତା ବିଚାର ନାହିଁ ॥

× × ×

ସମତ୍ୱ ଯୋଗକୁ—ସମତ୍ୱ ନାମକ ଯୋଗକୁ
ସମଦୃଷ୍ଟି (ନିରପେକ୍ଷ) ସଚରାଚର ଜଗତର
ଏକମାତ୍ର ଧର୍ମ ॥
ଶିଖିଛୁ ସେହୁ—ଯେ ଆଚରଣ କରେ ।
ଭଲ ମନ୍ଦରେ ତା—ପାପ ଓ ପୁଣ୍ୟ (ଯେ
ପାପାତ୍ମା ଓ ପୁଣ୍ୟାତ୍ମା ମାନଙ୍କ ପାଇଁ ସମ ଈଶ୍ୱର
ପୂର୍ଣ୍ଣ) ତାରେ ସମଦୃଷ୍ଟ । ଧର୍ମ ଅର୍ଥାତ୍ ରୁଚିର
କରଣ ମାଳା ଯାର ସମ ଦ୍ରାବୀ ।

ସମତା ନାମକ ଯୋଗକୁ ଯେ ଧାରଣ କରିଅଛୁ ।
ଯେ ପୂର୍ଣ୍ଣ ନିରପେକ୍ଷ, ସମଦୃଷ୍ଟ ଧର୍ମାଧାର ଅର୍ଥାତ୍
ରୁଚିର କରଣ ମାଳା ଯାର ସମ ଦ୍ରାବୀ । ଯେ ଏକ
ମହାସତ୍ୟରେ ଚଳାୟମାନ ସେହୁ ମହାପ୍ରାଣ ସଦ୍ଭକ୍ତ

ଓଁ

ଜୟ ଜଗଦୀଶ ନାମ ଯାହାର
ଛାୟା ଦେବୀର ସେ ଗଳାର ହାର ॥

×           ×           ×

ଜୟ ଜଗଦୀଶ—ଜଗତ୍ ଈଶ (ବୋଲି ଯାର ଜୟ ଗାନ ହୁଏ)

ନାମ ଯାହାର—ଯାହାର ନାମ ଅର୍ଥାତ୍ ଜଗଦୀଶ ନାମରେ ସେ ନାମିତ ହୁଏ ॥

ଛାୟାଦେବୀର—ଘନ ଅନ୍ଧକାରର ଅର୍ଥାତ୍ ଯାର ଉଦୟରେ ଘନ ଅନ୍ଧକାର ଲୀନ ହୋଇଯାଏ ।

ସେ ଗଳାରହାର—ଗଳାର ମାଳା ଅର୍ଥାତ୍ ଅନ୍ଧକାର ଯାର ଆଲିଙ୍ଗନରେ ନିଜକୁ ହଜାଇ ଦିଏ । ସର୍ବୋପରି ଯାହାର ପ୍ରକାଶରେ ଅନ୍ଧକାରର ବିନାଶ ଘଟେ । ତତ୍ତ୍ୱାର୍ଥଜ୍ଞାନ ଲୋକର ପ୍ରକାଶରେ ମାୟାର ଗୌରବ ରହେ ନା ॥

ଜଗତ୍ ଈଶ ବୋଲି ଯାର ଜୟଗାନ ହୁଏ । ଜଗଦୀଶ ନାମରେ ସେ ନାମିତ ହୁଏ । ଯା'ର ପରମ ପ୍ରକାଶରେ ଘନ ଅନ୍ଧକାର ଲୀନ ହୋଇଯାଏ । ଯାର ପ୍ରକାଶ ମହତ୍ । ତତ୍ତ୍ୱାର୍ଥ=ଜ୍ଞାନାଲୋକର ପ୍ରକାଶରେ ମାୟାର ଗୌରବ ରହେନା ॥

ଓଁ

**କଳିକାର ପାଠେ ସକଳ ଭେଳ**
**ନମୋ ନାରାୟଣ ଡ଼ାକଇ କେହ ॥**

+ + +

କଳିକାର ପାଠେ—ସ୍ରଷ୍ଟାର ସୃଷ୍ଟି ନିର୍ମାଣ ପର୍ଯ୍ୟାୟରେ
ସକଳ ଭେଳ—ଯାହାର ମହତ ବିକାଶ ରହିଛି ।
ନମୋ ନାରାୟଣ—ଯେ ନାରାୟଣ ରୂପ ।
ଡ଼ାକଇ କେହ—ଆର୍ତ୍ତ କଣ୍ଠରେ ଯେ ଜନବନ୍ଧୁ ନାମରେ କଥିତ ହୁଏ ।

ସ୍ରଷ୍ଟାର ସୃଷ୍ଟି ନିର୍ମାଣ ପର୍ଯ୍ୟାୟରେ ସେ ସକଳ । ଯାହାର ପୂର୍ଣ୍ଣ ପ୍ରକାଶ ସତତ ବିଦ୍ୟମାନ । ଯେ ଆର୍ତ୍ତ କଣ୍ଠରେ ଜନବନ୍ଧୁ ନାମରେ କଥିତ ହୁଏ । ଯେ ସତ୍ୟ ରୂପ ପରମ ନାରାୟଣ ପ୍ରତିପାଦ୍ୟ ବସ୍ତୁ ସେହି ସୂର୍ଯ୍ୟ-ନାରାୟଣ ।

ଓଁ

## ମହାଯଜ୍ଞେ ଭୃଗ ରଖେ ମହନ୍ତ
## ଜ୍ଞାନ ନେତ୍ରେ ଦିଶେ କେତେ କହନ୍ତ ॥

+ + +

ମହାଯଜ୍ଞେ—ମହତ ଯଜ୍ଞେ ସମୁଦାୟ ଜଗତ୍ ଯଜ୍ଞରୁ ଉଦ୍ଭବ, ଯଜ୍ଞରୁ ଜଳ, ଜଳରୁ ଅନ୍ନ । ଅନ୍ନରୁ ପ୍ରାଣୀ ମାନଙ୍କର ସମ୍ଭବ । ପ୍ରାଣୀ ମାନଙ୍କ ଦ୍ୱାରା ଯଜ୍ଞ କର୍ମ ସମାପ୍ତିତ ହୁଏ । ଶେଷରେ ଯଜ୍ଞରେ ହିଁ ସମୁଦାୟ ଜଗତ ଲୀନ ଯାଏ ।

ଭୃଗ ରଖେ ମହନ୍ତ = ଧର୍ମର ପ୍ରଚ୍ଛନ୍ନ ତତ୍ତ୍ୱ ଏହି ମହତଯଜ୍ଞରେ ନିତ୍ୟ ବିଦ୍ୟମାନ । ଜ୍ଞାନ ନେତ୍ରେ ଦିଶେ —ଭବ ଚକ୍ଷୁରେ ଯାହା କଦାପି ପ୍ରତ୍ୟକ୍ଷମାନ ହୁଏ ନାହିଁ । ଜ୍ଞାନ ନେତ୍ର ବିନା ଏ ମହତ୍ ଯଜ୍ଞର ରହସ୍ୟ ଅଜ୍ଞାତ ଗୋପନ

କେତେ ମହନ୍ତ—ଉପଲବ୍ଧ ସାପେକ୍ଷ

ସଚରାଚର ଜଗତ୍ ମହତ ବ୍ରହ୍ମ ଯଜ୍ଞରୁ ଉଦ୍ଭବ । ଯଜ୍ଞରୁ ଜଳ, ଜଳରୁ ଅନ୍ନ, ଅନ୍ନରୁ ପ୍ରାଣୀ ମାନଙ୍କର ସମ୍ଭବ । ପୁନଃ ପ୍ରାଣୀମାନଙ୍କ ଦ୍ୱାରା ଯଜ୍ଞକର୍ମ ସମାପିତ ହୁଏ । ଅବଶେଷରେ ମହତ୍ ଯଜ୍ଞରେ ସମୁଧାୟ ଜଗତ୍ ଲୀନ ଯାଏ । ଧର୍ମର ପ୍ରଚ୍ଛନ୍ନ ତତ୍ତ୍ୱ ଏହି ମହତ୍ ଯଜ୍ଞରେ ନିତ୍ୟ ବିଦ୍ୟମାନ । ଦିବ୍ୟ ଚକ୍ଷୁରେ ପ୍ରାପ୍ତି ବିନା ଏହି ଅଜ୍ଞାତ ଗୋପନୀୟ ରହସ୍ୟକୁ ଭେଦ କରିବା କଦାପି ସମ୍ଭବ ନୁହେଁ ।

ଓଁ

**ଚରାଚର ପ୍ରାଣ ବୋଲାଏ ସେହ୍ନ**
**ତା ନିକଟେ କେବେ ନ ଯାଏ କେହ୍ନ ॥**

+ + +

ଚରାଚର ପ୍ରାଣ—ପ୍ରାଣକେନ୍ଦ୍ର, ଜୀବନୀ ଶକ୍ତିର ଆଧାର ହିରଣ୍ୟ ଗର୍ଭ
ବୋଲାଏ ସେହି—ତାକୁ କୁହାଯାଏ (ନାମରେ ବର୍ଣ୍ଣିତ ହୁଏ)
ତା ନିକଟେ କେବେ—ତା ସମୀପକୁ
ନ ଯାଏ କେହି—ସ୍ଥୂଳ ଦେହରେ କେହି ଯାଇ ପାରେନା ।

ଏହି ପରମ ଜ୍ୟୋତିର୍ମୟ ମଣ୍ଡଳର ନାମ ହିରଣ୍ୟଗର୍ଭ ପ୍ରାଣକେନ୍ଦ୍ର ଅଟେ । ପଞ୍ଚ ମହାଭୂତ ନିର୍ମିତ ଶରୀରରେ ତାର ସନ୍ନିକଟବର୍ତ୍ତୀ ହେବା ବିଡ଼ମ୍ବନା ମାତ୍ର । ପରମ ପ୍ରାଣରେ ଲୀନ ହେବାର ଶକ୍ତି କେବେ କାହାର ନାହିଁ । ବିଷୟ ବାସନାର ପରିସମାପ୍ତି ନ ହେବା ପର୍ଯ୍ୟନ୍ତ ପରମ ଜ୍ଞାନ ମଣ୍ଡଳର ଚିନ୍ତା, ତତ୍ତ୍ୱର ବିକୃତି ମାତ୍ର ଅଟେ ।

ଓଁ

ସେବି ପାରିଲେ ତା ପଦ ନଳୀନ
ହୃଦେ ଉଦେ ହୁଏ ଜୀବନ ଧନ ॥

\+ \+ \+

ସେବି ପାରିଲେ—ଧ୍ୟାଇ ପାରିଲେ (ଆରାଧନା କରି ପାରିଲେ)

ତା'ପଦ ନଳିନ— ତା' ପଦାରବିନ୍ଦ (ପାଦପଦ୍ମ)

ହୃଦେ ଉଦେହୁଏ—ହୃଦୟରେ ବିରାଜମାନ କରେ ହୃଦୟ ଗୁମ୍ଫାରେ ଉଦୟ ହୁଏ

ଜୀବନ ଧନ— ପରମ ଜ୍ୟୋତି ରୂପ ଧାରଣ ପୂର୍ବକ

ଏହି ମହତ୍ ସତ୍ତ୍ୱର ପଦାରବିନ୍ଦର ପୂର୍ଣ୍ଣ ପ୍ରାଣରେ ଆରାଧନା କଲେ ହୃଦୟ ଗୁମ୍ଫାରେ (ଅନାହତ ଚକ୍ରରେ) ପରମ ଜ୍ୟୋତି ରୂପ ଧାରଣ ପୂର୍ବକ ପୂର୍ଣ୍ଣକାମ ମଙ୍ଗଳ ମୟ ପରମ ଚୈତନ୍ୟର ପୂର୍ଣ୍ଣ ବିକାଶ ସମ୍ଭବ ହୁଏ ।

ଓଁ

**ଭାସ୍ୱର ଭାସ୍କର ନୀଳ ପର୍ବତେ**
**ବଲ୍ଲବରୀ ନାଶେ କରମ ଗତେ ॥**

+ + ×

ଭାସ୍ୱର — ପ୍ରକାଶ ମୟ ।
ଭାସ୍କର—ଦିବାକର ॥
ନୀଳ ପର୍ବତେ—ତମୟ ରୂପ ଅନ୍ଧକାରରେ । ହୃଦୟ ଗ୍ରନ୍ଥିରେ . ( ଅନାବୃତ ) ଅନାହତ ଚକ୍ରରେ ।
ବଲ୍ଲବଶ୍ରୀ ନାଶେ— ଭବବଲ୍ଲୀକୁ ନଷ୍ଟ କରେ ।
କରମ ଗତେ—କର୍ମର ଫଳ ସ୍ୱରୂପ । ନିଷ୍କାମ କର୍ମ । ସର୍ବୋପରି ଜ୍ଞାନାଲୋକର ଆଶ୍ରୟରେ ଭବବଲ୍ଲୀର ପରିସମାପ୍ତି ଘଟେ ।

ତମୟ ରୂପ ଅନ୍ଧକାରରେ ପ୍ରକାଶ ମୟ ଦିବାକରର ଯେତେବେଳେ ଉଦୟ ଘଟେ ଅର୍ଥାତ୍ ନିଷ୍କାମ କର୍ମ ଯୋଗର ସାଧନରେ ଯେତେବେଳେ ଜ୍ଞାନ ସୂର୍ଯ୍ୟର ଉଦୟ ହୁଏ, ଜଣାଯାଏ ଭବ ବନ୍ଧିରେ ପରିସମାପ୍ତି ଘଟି ଅଛି ।

ଓଁ

ଧ୍ରୁବ ପ୍ରକାଶ ଏ ବନ୍ଧୁରଙ୍ଗାର
ଧରମ ଦେବତା କନ୍ଧ ରଙ୍ଗାର ॥

\+ \+ \+

ଧ୍ରୁବ ପ୍ରକାଶ ଏ—ଏ ତତ୍ତ୍ୱ ଚିନ୍ତନ ଧାରା ଅଟେ
ବନ୍ଧୁ ରଙ୍ଗାର—ବ୍ରହ୍ମର ବନ୍ଧୁଙ୍କ ପାଇଁ
ପ୍ରକାଶରେ ।
ଧରମ ଦେବତା—ଧର୍ମ ଦେବତା ଧର୍ମ ପୁରୁଷ
(ସାକ୍ଷୀ)
କନ୍ଧ ରଙ୍ଗାର—ଏହା କୁ ରଙ୍ଗା "ର" ରମଣୀୟ
ଜଗତ ଧାର ବୁହାଯାଏ ।

ପରମ ତତ୍ତ୍ୱ ବନ୍ଧୁଭାବର ଏ ତତ୍ତ୍ୱ ଚିନ୍ତନ ଧାରା
ଅଟେ । ରଙ୍ଗା 'ର' ର ଅର୍ଥାତ୍ ରମଣୀୟ 'ର'
ବର୍ଣ୍ଣାକ୍ଷର ର ଏହା ବନ୍ଧୁଃପ୍ରକାଶ ଅଟେ । ଏ ଧର୍ମାଧାର
ମହତ୍ ପୁରୁଷ କେବଳ ମାତ୍ର ସାକ୍ଷୀ ସ୍ୱରୂପ ।

॥ ୧୦୧ ॥

ଓଁ

**ଯୋଗେ ନେତ୍ରେ ହିରି ଦେଲ ଚହ୍ଲାଇ**
**ସେବ ପାଣ୍ଡବଙ୍କ କଳା କହ୍ଲାଇ ॥**

+ + +

ଯୋଗ ନେତ୍ରେ—ପ୍ରାପ୍ତ ଜ୍ଞାନ ନେତ୍ର ଦ୍ୱାରା ।
ହିରି—ପରମ ଜ୍ୟୋତିକୁ ।
ଦେଲ ଚହ୍ଲାଇ—ପ୍ରକାଶିତ କରାଇ ଦେଲ ।
ସେବ ପାଣ୍ଡବଙ୍କ—ଏହି ମହତ୍ ତତ୍ତ୍ୱାଭ୍ୟନ୍ତରକୁ ପ୍ରବେଶରେ ଏକମାତ୍ର ଉପାୟ ।
କଳା କହ୍ଲାଇ—ବିଷୟ ରତିର ଶେଷ । ନିର୍ମଳ ହୃଦୟରେ ତତ୍ତ୍ୱର ଉଦୟ ।

ଟେମ୍ନୁ କୃପା କୃତ ପ୍ରାପ୍ତ ଜ୍ଞାନ ନେତ୍ର ଦ୍ୱାରା ଏହି ପରମ ତତ୍ତ୍ୱମୟ ଜ୍ୟୋତି ମଣ୍ଡଳକୁ ପ୍ରକଟିତ କରାଇ ଦେଲ । ଏହି ମହତ୍ ତତ୍ତ୍ୱାଭ୍ୟନ୍ତରକୁ ପ୍ରବେଶର ଏକ ମାତ୍ର ଉପାୟ ତତ୍ତ୍ୱସ୍ଥ ଅନୁସ୍ମରଣୀୟ ଶୁଦ୍ଧି ଓ ନିଷ୍କାମ କର୍ମ ଯୋଗ ଅର୍ଥାତ୍ କର୍ମ ସନ୍ନ୍ୟାସ ଯୋଗର ଆଶ୍ରୟ

ଓଁ

# ପାନ୍ଥଟିଏ ଅଛି ଛଅ କୋଠରୀ
# ଷୋଡ଼ଶ କଳାକୁ ହୃଦୟେ ଧର ॥

\+ \+ \+

ପାନ୍ଥଟିଏ ଅଛି—ପନ୍ଥଟିଏ ଅଛି । (ଯେଉଁଠାରେ ଚନ୍ଦ୍ରର ପ୍ରକାଶ ହୁଏ । ସମୁଦାୟ ଜଗତ୍ ଗ୍ରନ୍ଥନର 'ସୂକ୍ଷ୍ମ ବିନ୍ଦୁ'

ଛଅ କୋଠରୀ—ଛଅ ଚକ୍ର ପ୍ରତ୍ୟେକର ଏକ ସ୍ୱତନ୍ତ୍ର କର୍ମ ରହିଛି ସମୁଦାୟ ଅଣୁଂଶ ବର୍ତ୍ତି ଏ ଚକ୍ରମାନଙ୍କର ଅଧୀନ

ଷୋଡ଼ଶ କଳାକୁ = ୧+୨+୩+୪+୫ = ୧୫ ବ୍ୟକ୍ତ କଳା ତଥା ଏକ ଅବ୍ୟକ୍ତ କଳା (ବ୍ୟକ୍ତ ୧୫+ଅବ୍ୟକ୍ତ ୧ = ୧୬) କଳା ହୃଦୟେ ଧର = ହୃଦୟରେ ବହନ କର

ବ୍ୟୋମ—ଶବ୍ଦ—୧

ମରୁତ୍—ଶବ୍ଦ+ସ୍ପର୍ଶ—୨

ତେଜ—ଶବ୍ଦ+ସ୍ପର୍ଶ+ରୂପ—୩

ଅପ୍—ଶବ୍ଦ+ସ୍ପର୍ଶ+ରୂପ+ରସ=୪

କ୍ଷିତି—ଶବ୍ଦ+ସ୍ପର୍ଶ+ରୂପ+ରସ+ଗନ୍ଧ=୫

ସମ୍ପ୍ରଦାୟ ଜଡ଼ର ଗ୍ରନ୍ଥନର ହୃଷ୍ଟ ନିୟମ ଛଅଟି ଚକ୍ରମୟ ପ୍ରକୋଷ୍ଠ ମଧ୍ୟରେ ସଂଘଟିତ ହୁଏ । ପ୍ରତି ପ୍ରକୋଷ୍ଠ ଅଣୁକଂଶ ବର୍ଣ୍ଣର ମାଧ୍ୟମରେ ଷୋଡ଼ଶ କଳା ଯୁକ୍ତ । ପ୍ରତିକଳା ଏକ ଚୈତନ୍ୟ କଳାରେ ଆବୃତ = ଗୁପ୍ତ ।

ଓଁ

**ତିନ୍ନି ରଙ୍ଗରେ ସେ କୋଠରୀ କଳା**
**ସେହ୍ନି ବାଟେ ଯାଏ ଯୋଗୀର ବଳା ॥**

\+ \+ \+

ତିନି ରଙ୍ଗରେ = ଗୁଣତ୍ରୟରେ ଅର୍ଥାତ୍ ସତ୍ତ୍ୱ, ରଜ, ଓ ତମରେ
ସତ୍ତ୍ୱ — ନାରାୟଣ ଉପାସନାରେ
ରଜ — ବ୍ରହ୍ମୋପାସନାରେ
ତମ — ରୁଦ୍ରୋପାସନାରେ
ସେ କୋଠରୀ କଳା — ପ୍ରତ୍ୟେକ କୋଠରୀରେ ଅର୍ଥାତ୍ ଚକ୍ରରେ ଏହି ରଙ୍ଗ ବିଦ୍ୟମାନ ଥାଏ ।
ସେହି ବାଟେ ଯାଏ — ଏହି ସୂତ୍ର ମାଧ୍ୟମରେ ଯୋଗୀଚକ୍ର ଭେଦନ ପୂର୍ବକ ଉର୍ଦ୍ଧ୍ୱକୁ ଗତି କରେ

ତ୍ରିତ ପ୍ରକୋଷ୍ଠ ତିନୋଟି ମହାବର୍ଣ୍ଣ ଦ୍ୱାରା ସତତ ଶୋଭାୟମାନ । ଏକ ଏକ ବର୍ଣ୍ଣ ଏକ ଏକ ମହା ଶକ୍ତିରେ ଆରୋପିତ । ଏହି ମହତ୍ ବର୍ଣ୍ଣ ମାନଙ୍କୁ ଆଶ୍ରୟ କରି ଯୋଗୀ ଯୋଗ; ସୂତ୍ରର ମାଧ୍ୟମରେ ଚକ୍ର ସମୂହର ଭେଦନ ପୂର୍ବକ ପରମାର୍ଥ ପ୍ରାପ୍ତି ବଳାସରେ ଅତି ଉର୍ଦ୍ଧ୍ୱକୁ ଗତି କରେ ।

ଓଁ

**ରିପୁ ଶିର ଛେଦା ଜ୍ଞାନ ଖଡ଼ଗ**
**ଯାରେ ମିଳିଯାଏ ସେ ବଡ଼ ଜଗ ॥**

\+ \+ \+

ରିପୁ—କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । ନିର୍ମଳ ମନର ଶୋଷକ ଶତ୍ରୁ (ମିଥ୍ୟାଚାର ମାଧ୍ୟମରେ ମନର ନିର୍ମଳତା ନଷ୍ଟ କରି) ମନକୁ ବିପଥଗାମୀ କରାନ୍ତି ।

ଶିରଚ୍ଛେଦା—ରିପୁ ମାନଙ୍କ ସଂହାର ପାଇଁ ।

ଜ୍ଞାନ ଖଡ଼ଗ—( ଅସଙ୍ଗ ନାମ ଯୋଗ ) (ଜ୍ଞାନାଲୋକ)

ଯାରେ ମିଳିଯାଏ—ପରମ କୃପାରୁ ଯା'ରେ ଲବ୍ଧ ହୁଏ । ଯାହାକୁ ପ୍ରାପ୍ତ କରିଯାଏ ।

ସେ ବଡ଼ ଜଗ—ସେହି ବାସ୍ତବ ରକ୍ଷା । ଅର୍ଥାତ୍ ତାର ବୃତ୍ତି ନିରୋଧ ବଳରେ ତତ୍ତ୍ୱ ଲବ୍ଧ ହୋଇ ଥାଏ ।

ନିର୍ମଳ ମନର ଶୋଷକ ଶତ୍ରୁ (ଷଡ଼ ରିପୁ ବର୍ଗ'ସରଳ ମନକୁ ସତତ ବିପଥଗାମୀ କରନ୍ତି । ଏମାନେ ଦୁର୍ଜୟ ।

ଅସଙ୍ଗ ନାମା ଯୋଗ=ଜ୍ଞାନ ବଳରେ ଏମାନଙ୍କ ଶିରଚ୍ଛେଦନ କରାଯାଏ । ଏ ଜ୍ଞାନ ତତ୍ତ୍ୱର ପ୍ରାପ୍ତି ଅତୀବ ଦୁର୍ଲଭ ଯେଉଁ ପୁଣ୍ୟାତ୍ମା ଅଶେଷ ଜନ୍ମର ସୁକୃତ ବଳରେ ଏହି ମହତ୍ ଅସ୍ତ୍ରକୁ ଲାଭ କରେ ବାସ୍ତବରେ ସେହି ମହାପୁରୁଷ ସୌଭାଗ୍ୟଶାଳୀ ଚରିତାର୍ଥ (ଚିତ୍ତ ବୃତ୍ତିର ନିରୋଧ ବଳରେ ଚିତ୍ତଲାଭ ହୋଇ ଥାଏ ।

ଓଁ

**ଗହନ କରମ ଗତ ଜାଣିବା**
**ମହାଶୂନ୍ୟରୁ ସେ ରସ ଟାଣିବା ॥**

\+ + +

ଗହନ କରମ ଗତ ଜାଣିବା—କର୍ମର ଗତ ଉପଲବ୍ଧ ହେବା ଅତି କଠିନ ।

କର୍ମ ସନ୍ୟାସ ଯୋଗର ଆଶ୍ରୟରେ କର୍ମ ଯୋଗୀର ଜ୍ଞାନ ଲାଭ ହୁଏ । କର୍ମରେ ସିଦ୍ଧି ଏକ ଖଣ୍ଡା ଧାରବାଣ ଉପରେ ପଦସ୍ପୁରଣ କରିବା ସଙ୍ଗେ ସମାନ ବୋଲି କର୍ମ ଯୋଗୀମାନଙ୍କ ଅଭିମତ । ଏଣୁ ଏହା ଅତୀବ ଦୁରୂହ ।

ଫଳ ତ୍ୟାଗ ସମୟରେ ଫଳ ଶକ୍ତିକୁ ଆଶ୍ରୟ କରେ ।

ମହା ଶୂନ୍ୟରୁ ସେ ରସ ଟାଣିବା — ପୂର୍ଣ୍ଣ ତ୍ୟାଗର ପୂର୍ଣ୍ଣତ୍ୱ ପ୍ରାପ୍ତି ଅର୍ଥାତ୍ ତତ୍ତ୍ୱ ଲବ୍ଧ ହୁଏ ।

କର୍ମର ଗତି ନିୟନ୍ତ୍ରଣ କରିବା ଅତୀବ ଦୁରୂହ । କର୍ମ ଯୋଗର ଆଶ୍ରୟରେ ସିଦ୍ଧି ଲାଭ କରିବା ଏତେ କଠିଣ ଯେ, ଯୋଗୀ ଯେ କୌଣସି ଅବସ୍ଥାରେ ପଥ ଭ୍ରଷ୍ଟ ହୋଇପାରେ । କାରଣ ଫଳ ତ୍ୟାଗ ସମୟରେ ଫଳାଶକ୍ତିକୁ ଆଶ୍ରୟ କରେ । ପୂର୍ଣ୍ଣର ତ୍ୟାଗରେ ପୂର୍ଣ୍ଣର ପ୍ରାପ୍ତି ଅର୍ଥାତ୍ ତତ୍ତ୍ୱାର୍ଥ ଲାଭ । ଅବ୍ୟକ୍ତ ରସ ଶୂନ୍ୟ ସରସୀରୁ ପୂର୍ଣ୍ଣ ରସମୟ ସଦାନନ୍ଦ ଲାଭ । ଏଣୁ ମର୍ମରେ କର୍ମର ଯୋଗ କେତେ କଠିନ ତାହା ଅନୁମେୟ

ଓଁ

ଭାବେ ଭକତର ସୀମା ଛୁଅଇଁ
ଭାବେ ଭାବଗ୍ରାହୀ ଛଉଳ କହ୍ନୁ ॥

\+ + +

ଭାବେ—ତନ୍ମୟତା (ଭାବରେ) ଭକ୍ତର—ଭକ୍ତର

ସୀମା—ରେଖା

ଛୁଅଁଇ—ସ୍ପର୍ଶ କରେ

ଭାବେ—ବୈଭବରେ(ଉପାସନାର ମାଧ୍ୟମରେ)

ଭକ୍ତି—ନବଧା

ଭାବଗ୍ରାହୀ—ଭାବଗ୍ରହଣ କାରୀ

କୃପାନିଧି— ଯାର ଅହେତୁକ କୃପା ସତତ ବିଦ୍ୟମାନ

ଛଉଳ କହ୍ନୁ – ଅନନ୍ୟ ଭକ୍ତିର ଆଧାରରେ ବିରାଜମାନ କରନ୍ତି ।

ଭକ୍ତି—ସଗୁଣ ଓ ନିର୍ଗୁଣ ଉଭୟେ ଉପାସନାରେ ଏକାନ୍ତ ଆବଶ୍ୟକ ।

ଜୀବ ଭାବ ରୂପ।—ଏହି ପରମ ଭାବକୁ ଯେ ଗ୍ରହଣ
କରେ, ସେ ଭାବଗ୍ରାହୀ। ଭାବର ଅଭିବ୍ୟକ୍ତି ଭକ୍ତିର
ମାଧ୍ୟମରେ ହିଁ ହୋଇଥାଏ । ତତ୍‌ଗତ ଭାବଯୁକ୍ତ
ଉପାସନାରେ ଭକ୍ତ ନିଜକୁ ପୂର୍ଣ୍ଣ ରୂପେ ପ୍ରଭୁଙ୍କ ଚରଣା-
ବିନ୍ଦରେ ସମର୍ପଣ କରିଥାଏ। ଏଣୁ ଜ୍ଞାନ ଓ କର୍ମର
ବନ୍ଧନ ଅତିକ୍ରମଣ ପୂର୍ବକ ପରମ ପାଦରେ ଅବସ୍ଥାନ
କରିଥାଏ। କରୁଣା କରୁଣାଳୟଙ୍କର ଅହେତୁକ କୃପା
ଭକ୍ତ ଉପରେ ସଦା ବିଦ୍ୟମାନ ଏଣୁ ଅନନ୍ତ ସତ୍ତ୍ୱକୁ
ଭକ୍ତ ପରିମିତ ଓ ଅପରିମିତ ଉଭୟ ଅବସ୍ଥାରେ
ସ୍ୱ ଇଚ୍ଛାନୁକୂଳ ଭାବବେଶେ ଦର୍ଶନ କରିଥାଏ। ଏଣୁ
ପରମାତ୍ମାର କୌଣସି ଜଟିଳ ମୀମାଂସା ଭକ୍ତକୁ
ଭେଦନ କରିବାକୁ ପଡ଼େନା। (ସେ ସଦା ଚିଦାନନ୍ଦମୟ)

ଓଁ

**ତିନ ରଙ୍ଗରେ ଏ ରଙ୍ଗ ସରସ**
**ନଅ ଭାଗ ବହେ ଏ ରଙ୍ଗ ରସ ॥**

+ + +

ତିନି ରଙ୍ଗରେ—ତିନି ମାର୍ଗରେ ଜ୍ଞାନ, କର୍ମ, ଓ ଭକ୍ତି
ଏ ରଙ୍ଗ = ଭକ୍ତି
ସରସ—ଅଶେଷ ରସଯୁକ୍ତ (ପ୍ରେମରସ) ଏହା ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଯୁକ୍ତ । ତତ୍ତ୍ୱ ପ୍ରାପ୍ତିରେ ସୁଗମ ସର୍ବଜନଗ୍ରାହ୍ୟ । ନଅଭାଗ ବହେ । ଏହା ନବଧା—ଭକ୍ତିରେ ଶୃଙ୍ଗାରେ ଶ୍ରେଷ୍ଠ ପ୍ରମାଣିତ ହୋଇଅଛି
ଏ ରଙ୍ଗ ରସ = ଭକ୍ତି
ରାଧା = ଜୀବ ରାଧା = ପ୍ରକୃତି, ଭକ୍ତି
ମାଧବ—ପରମ ଶ୍ୟାମ — ପୁରୁଷ (ଶୃଙ୍ଗାର କ୍ରୀଡ଼ା) ୧-ଶ୍ରବଣ, ୨-କୀର୍ତ୍ତନ, ୩-ସ୍ମରଣ, ୪-ପଦସେବନ, ୫-ଅର୍ଚ୍ଚନ, ୬-ବନ୍ଦନ, ୭-ଦାସ୍ୟ ୮-ସଖ୍ୟ, ୯-ଆତ୍ମ ନିବେଦନ

ଜ୍ଞାନ କର୍ମ ଓ ଭକ୍ତି ଏହି ତିନି ମାର୍ଗରୁ ଭକ୍ତି ହିଁ ପରମ ସରସ । ଏହା ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଭରା । ତତ୍ତ୍ୱ ପ୍ରାପ୍ତିରେ ଏହା ସୁଗମ ଓ ସର୍ବଜନ ଗ୍ରାହ୍ୟ । ଏହି ମାର୍ଗ ବା ନଅ ରସ ଯୁକ୍ତ (ନବଧା) ଭକ୍ତିରେ ଶୃଙ୍ଗାର ରସ ଶ୍ରେଷ୍ଠ ପ୍ରମାଣିତ ହୋଇଅଛି । ଏହା ଜୀବ ଓ ପରମର ତତ୍ତ୍ୱାର୍ଥ କ୍ରୀଡ଼ା ।

ଓଁ

## କେଳି କଦମ୍ବର ଏ ମୂଳ ଘାଇ
## ଘାଟେ ବଂଶୀନାଦ ଶୁଣଇ ରାଈ ॥

× × ×

କେଳି କଦମ୍ବର ଏ ମୂଳ ଘାଈ—କଳ୍ପ ବୃକ୍ଷର ମୂଳ । ପ୍ରକୃତି ଓ ପୁରୁଷର କ୍ରୀଡ଼ା ରଙ୍ଗ ଭୂମି (ଜୀବାତ୍ମା ଓ ପରମାତ୍ମାର ଏକକ୍ଷୀକରଣ) ମହା ମିଳନ) ଘଟେ ବଂଶୀ ନାଦ = ବଂଶୀନାଦ ବନ୍ଦନା = ବ୍ରହ୍ମ ନାଦ । ଶୁଣଇ ରାଈ = ଜୀବାତ୍ମା ଶ୍ରବଣ କରେ ।

ଏହା କଳ୍ପ ବୃକ୍ଷର ମୂଳ । ପ୍ରକୃତି ଓ ପୁରୁଷର କ୍ରୀଡ଼ା ରଙ୍ଗ ଭୂମି । (ନାଦ ବିନ୍ଦୁର ପରମ ମିଳନ) ପରମ ହବ ଯୁକ୍ତ 'ଘ' ସଧା ପରମ ନାଦ 'ମ' (ମାଧବ) ଅପେକ୍ଷାରେ ରତ ମନା ଥାଏ । ଅର୍ଥାତ୍ ଜୀବାତ୍ମା ଏ ପରମ ନାଦ ଶ୍ରବଣ ରେ ଉନ୍ମନୀ ଅବସ୍ଥାକୁ ପ୍ରାପ୍ତ ହୁଏ ।

ଓଁ

**ଛଅ ରନ୍ଧ୍ର ବଂଶୀ ନିଶବ୍ଦ ସ୍ୱନ**
**ସପତ ରନ୍ଧ୍ରରେ କରେ ବଦ୍ଧ୍ୟାନ ॥**

× × ×

ଛଅ ରନ୍ଧ୍ର ବଂଶୀ—ସ୍ୱଭାବତଃ ବଂଶୀ ଛଅ ରନ୍ଧ୍ର ଯୁକ୍ତ ଥାଏ । ପ୍ରତ୍ୟେକ ରନ୍ଧ୍ରରୁ ଏକ ବିଶେଷ ସ୍ୱନ ନିର୍ଗତ ହୁଏ ।

ନିଶବ୍ଦ ସ୍ୱନ—ଏ ନିନାଦିତ ସ୍ୱର ମାଳାର ଏକଧ୍ୱନି କରଣ "ର" ଉଚ୍ଚାରଣ କରେ । ସପତ ରନ୍ଧ୍ରରେ ଏ ଛଅ ରନ୍ଧ୍ର ବ୍ୟତୀତ ବଂଶୀର ଆଉ ଏକ ଗୋପନ ରନ୍ଧ୍ର ରହିଛି ଏହା ସପ୍ତମ ରନ୍ଧ୍ର ।

କରେ ବଦ୍ଧ୍ୟାନ—ଉକ୍ତ ରନ୍ଧ୍ରରୁ 'ମ'ର ନିର୍ଗମନ ହୁଏ ।

ଏହା ସ୍ୱର ମଣ୍ଡଳ—ର ଓ ମ ସୌନ୍ଦର୍ଯ୍ୟ, ଭକ୍ତ । ଗୋପନ ନାଦ । ଯୋଗ ଆଣ୍ଟାସ୍ଥରେ ପ୍ରତି ରନ୍ଧ୍ରରେ ଦୁଇ ଦୁଇ ନାଦ । (ଦ୍ୱାଦଶ ନାଦ) ରମଣୀୟ ରାମ ଉଚ୍ଚାରଣ କରେ । ସପ୍ତମ ନାଦବିଂ ହ୍ରି ଉଚ୍ଚାରଣ କରେ ।

ସ୍ୱଭାବତଃ ବଂଶୀ ଛଅ ରନ୍ଧ୍ର ଯୁକ୍ତ । ଏହାର ଆଉ ଏକ ଅବ୍ୟକ୍ତ ରନ୍ଧ୍ର ବିଦ୍ୟମାନ । ନିଗମ ସ୍ୱନ ଏହି ରନ୍ଧ୍ରର ମାଧ୍ୟମରେ 'ମ' ରୂପେ ନିର୍ଗତ ହୁଏ । ଏହା ସ୍ୱର ମଣ୍ଡଳ ''ଗ'' ର ପରିପୂରକ । ସର୍ବୋପରି ନାଦ ବିନ୍ଦୁ ଆତ୍ମିକା ଗଂ ହି ଉଚ୍ଚାରଣ କରେ ।

ଓଁ

**ଶୁଭୁଥାଏ ରାଧା ରାଧା ସୁନ୍ଦରୀ**
**ବୃନ୍ଦାବନେ ଶ୍ୟାମ ମୁରଲୀ ଧାରୀ ॥**

× × ×

ଶୁଭୁଥାଏ ରାଧା—ଶ୍ରବଣ ହେଉଥାଏ

ରାଧା ସୁନ୍ଦରୀ—ପରମା ପ୍ରକୃତି (ପରମା ସୁନ୍ଦରୀ)

ବୃନ୍ଦାବନେ—ଗୋଲକ ମଣ୍ଡଳେ । ଜ୍ଞାନଲୋକ ମଣ୍ଡଳେ ।

ଶ୍ୟାମ—ସଚ୍ଚିଦାନନ୍ଦ ଘନ ।

ମୁରଲୀଧାରୀ—ବଂଶୀ ବାଦନ କାରୀ ବ୍ରହ୍ମାନନ୍ଦର ବ୍ରହ୍ମନାଦ ଜୀବାତ୍ମାଙ୍କୁ ରାମ ନାଦ ରୂପୀ ହୁଏ ।

ଏହି ସ୍ୱର ମଣ୍ଡଳୀ ମଧ୍ୟରୁ ନାଦ ପ୍ରକମ୍ପନ ରା ପରମ ପ୍ରକୃତି, ପରମା ସୁନ୍ଦରୀ କହି କହି ନିର୍ଗତ ହେଉଥାଏ । ପୁଣି ଆପେକ୍ଷିକ ସଂକେତରେ କହୁଥାଏ ମୁଁ ଶ୍ୟାମ 'ମ' (ସଚ୍ଚିଦାନନ୍ଦ ଘନ) ଜ୍ଞାନ ମଣ୍ଡଳରେ ତୋର ଅପେକ୍ଷାରେ ରହିଅଛି । ଲୀଳାମୟର ଷଚଷ ଲୀଳା ଏହି ରାସ ରହସ୍ୟ ହିଁ ଅଟେ ।

ଓଁ

**ବ୍ରହ୍ମ ରନ୍ଧ୍ର ଭେଦ ଗମଇ ଧନ**
**ବଡ ଗହନ ସେ ନିଗମ ସ୍ୱନ ॥**

+ + +

ବ୍ରହ୍ମ ରନ୍ଧ୍ର ଭେଦ = ବ୍ରହ୍ମ ରନ୍ଧ୍ରକୁ ଭେଦନ କରି ॥

ଗମଇ ଧନ = ବ୍ରହ୍ମ ନାଦର ଉଦ୍‌ଗମନ ହୁଏ ॥

ବଡ଼ ଗହନ ସେ ନିଗମ ସ୍ୱନ = ଏହା ଶ୍ରୁତି ଠାରୁ ଅଲଗା ॥

ଯୋଗାନୁକୂଳ ଅବସ୍ଥାକୁ ପ୍ରାପ୍ତ ହେଲେ ॥

ଏହି ମହତ ନାଦର ଶ୍ରବଣ ହୁଏ ॥

ଏହି ନାଦର ବାରଟି ଅବସ୍ଥା ॥

ଶେଷ ନାଦ ହି ବଂଶୀ ॥

ବ୍ରହ୍ମ ରନ୍ଧ୍ରକୁ ଭେଦନ ମୂଳକ ଏହି ପରମ ନାଦର ଉଦ୍‌ଗମନ ହୁଏ । ଏହା ଅତି ଗୁହ୍ୟ ଶ୍ରୁତି ଠାରୁ ପୂର୍ଣ୍ଣ ସ୍ୱତନ୍ତ୍ର । ଯୋଗ ଅନୁକୂଳ ଅବସ୍ଥା ଧାରଣ କଲେ ଏହି ମହତ ନାଦର ବିକାଶ ହୁଏ । ଏହି ନାଦର ଦ୍ୱାଦଶ ଅବସ୍ଥାରେ, ଅନୁକ୍ରମ ନାଦ ବଂଶୀ ଅଟେ ॥

ଓଁ

**ଯାରେ ରମନାଦ ଶୁଭଇ ଆସି**
**ଆତ୍ମାରାମେ ଆତ୍ମରାମ ପ୍ରକାଶି ॥**

× × ×

ଯାରେ ରମ ନାଦ—ଯାହାକୁ ରମ ନାଦ ଓଁକାର ଶୁଭଇ ଆସି—ଶ୍ରବଣ ହୁଏ। ନାଦମୟ ଜଗତ୍ ଜଣାଯାଏ। "ତାର ଯୋଗାନୁକୂଳ ଅବସ୍ଥା ଆସିଅଛି"

ଆତ୍ମାରାମେ—ଆତ୍ମା ରାମରେ
ଆତ୍ମାରାମ ପ୍ରକାଶି—ଆତ୍ମାରାମରେ ପ୍ରକାଶ ହୁଏ ଅର୍ଥାତ୍ ଜୀବର ଜୀବତ୍ୱ ଅତିକ୍ରମଣ ହୁଏ।

ବିଜ୍ଞାନ ମୟ କୋଷରେ ଅବସ୍ଥାନ କରେ। ଏହି ନାଦର ମାଧ୍ୟମରେ ଏହି ପରମ ଚୈତନ୍ୟର ଲଭ ହୁଏ। ଅନ୍ନମୟ କୋଷ, ମନମୟ କୋଷ, ପ୍ରାଣମୟ କୋଷ, ତଥା ଜ୍ଞାନମୟ କୋଷ

ଯେଉଁ ସୁକୃତ ଜନ୍ମା ପୁଣ୍ୟ ପୁରୁଷଙ୍କୁ ଏହି ପରମ ରମ ନାଦ ଓଁକାର ଶ୍ରବଣ ହୁଏ, ସେହି ଆତ୍ମରାମରେ ରମଣ କରେ। ଅର୍ଥାତ୍ ଜୀବ ଜୀବତ୍ୱ ଅତିକ୍ରମଣ ପୂର୍ବକ ବିଜ୍ଞାନ ମୟ କୋଷରେ ଅବସ୍ଥାନ କରେ। ନାଦର ମଧ୍ୟରେ ହିଁ ପୂର୍ଣ୍ଣାନନ୍ଦର ପ୍ରକାଶ ହୁଏ। ଜୀବର ପଞ୍ଚ ମହାକୋଷ ସ୍ଥୂଳ ଓ ସୂକ୍ଷ୍ମ ଜଗତର ଲୟ ହୁଏ।

ଓଁ

**ମହାପୂର୍ଣ୍ଣ୍ୟ ଜ୍ୟୋତି ମଣ୍ଡଳେ ତାର**
**କୁଣ୍ଡଳିନୀ ବାସ କରଇ ସାର ॥**

\+ \+ \+

ମହା ପୂର୍ଣ୍ଣ୍ୟ ଜ୍ୟୋତି— ଦିବ୍ୟ ଜ୍ୟୋତି ସତ୍ୟ,
ମଣ୍ଡଳେ ତାର — କୁଣ୍ଡଳିନୀ ବାସ — ଜଗତ୍
ଭ୍ରମଣ ଶେଷ କରି
କରଇ ବାସ—ମହତ୍ ସଦ୍ଗୁରୁ । ଚରଣାରବିନ୍ଦ
ଗଳିତ ମକରନ୍ଦ ଧାର ପାନ ପୂର୍ବକ କୃତାର୍ଥ
ହୋଇଯାଏ ।
ଜନ୍ମ ଜନ୍ମାନ୍ତର ଲକ୍ଷ୍ୟ = କୃପାସିନ୍ଧୁ ଲାଭ

ଜୀବାତ୍ମା ଚରାଚର ଜଗତ୍ ପରିଭ୍ରମଣ ଶେଷ କରି ମହାପୂର୍ଣ୍ଣ୍ୟ ଜ୍ୟୋତି ମଣ୍ଡଳରେ (ସତ୍ୟ ଲୋକରେ) ମହତ ସଦ୍ଗୁରୁ ଚରଣାରବିନ୍ଦ ଗଳିତ ମକରନ୍ଦ ଧାର ପାନ ପୂର୍ବକ କୃତାର୍ଥ ହୋଇଯାଏ । ଜନ୍ମ ଜନ୍ମାନ୍ତରର ଅନ୍ତିମ ଲକ୍ଷ୍ୟ କୃପାସିନ୍ଧୁ ଲାଭ ହୁଏ ।

ଓଁ .

**ଅଷ୍ଟଶତ କଣ୍ଠି ପୂର୍ବ ଯୋଗିନୀ**
**ହୃଦୟେ ଦଶିଲ୍ ଶୋଭା ବପଣି ॥**

× + ×

ଅଷ୍ଟଶତ କଣ୍ଠି ପୂର୍ବ ଯୋଗିନୀ—ପୂର୍ବ ଯୋଗିନୀ ବର୍ଣ୍ଣିତ ଅଷ୍ଟଶତ କଣ୍ଠି (ଏକଶତ ଅଠ କଣ୍ଠି (ତତ୍ତ୍ୱ) ।

ହୃଦୟେ ଦଶିଲ— ଯାହା ହୃଦୟରେ ପ୍ରକାଶ ଲାଭ କଲା ।

ଶୋଭା ବପଣି — ଏକ ଏକ ତତ୍ତ୍ୱ ଶୋଭା ଶ୍ରୀ ରେ ମଣ୍ଡିତ ।

ପୂର୍ବ ଯୋଗିନୀ ବର୍ଣ୍ଣିତ ପରମ ତତ୍ତ୍ୱମୟ ଏକଶତ ଅଠ କଣ୍ଠି ଯାହା ହୃଦୟରେ ପ୍ରକାଶ ଲାଭକଲା, ତାହା ପରମ ଆହ୍ଲାଦ ଦାୟିନୀ ଅପୂର୍ବ ଶୋଭାଶ୍ରୀ ରେ ପରିପୂର୍ଣ୍ଣ ଅଟେ ।

ଓଁ

ଭାବେ ବିରଚିଲି ସ୍ମରି ତ୍ରିନେତ୍ର,
କବି କବିରାଜ ରାଜୀବ ନେତ୍ର ।

\+ \+ \+

ଭାବେ—ଭାବ ଗଦ୍‌ଗଦ୍ ଚିତ୍ତରେ; ଭଗବନ୍ତ କୃପାରେ

ବିରଚିଲି—ରଚନା କଲି

ସ୍ମରି ତ୍ରିନେତ୍ର — ମଙ୍ଗଳମୟ ପରମ ଶିବଙ୍କୁ ସ୍ମରଣ କରି

କବି କବିରାଜ—"ପଦ୍ମଲୋଚନ" କବିରାଜ ରାଜୀବ ନେତ୍ର ।

ଭାବ ଗଦ୍‌ଗଦ୍ ଚିତ୍ତରେ ଭଗବନ୍ତ କୃପା ଲାଭ ପୂର୍ବକ ମଙ୍ଗଳମୟ ପରମ ଶିବଙ୍କୁ ସ୍ମରଣ କରି କବି କବିରାଜ ରାଜୀବନେତ୍ର ମଧୁର ପଦାବଳୀରେ (ମାଧ୍ୟମରେ) ପବିତ୍ର ପୂର୍ବ ଯୋଗିଙ୍କର ଚକ୍ର କଣ୍ଠିକିଚୟର ନିର୍ମାଣ ଶେଷ କଲି ।

# ଉତ୍ତର ଯୋଗିନୀ

ଓଁ

ବନ୍ଦେ ବନ୍ଦମାସ୍ତୁ ଦେବ ଚନ୍ଦ୍ରରାଜ ଚୂଡ଼ାମଣି
ବନ୍ଦେ ବନ୍ଦନାରମ୍ଭିଣୀ ଶ୍ବେତ ପଦ୍ମାସୀନା ବାଣୀ
ବନ୍ଦେ ଗୁରୁ ସ୍ମରଣ୍ୟ ବର୍ଣ୍ଣ ଧୂର୍ଜ୍ଜଟି ଚନ୍ଦ୍ରମୌଳୀ
ବନ୍ଦେ ସଂ ଜଗତ ଜୀବନଂ ଜାନକ୍ଷ ହୃଦଶୈଳୀ



ଓଁ

# ଅପୂର୍ବ ଶ୍ରୀରାମ ରସ ନିର୍ଝର
# ଅପୂର୍ବ ଏ ସୃଷ୍ଟି ରସ ରକାର ॥

× × ×

ଅପୂର୍ବ ଶ୍ରୀରାମ ରସ ନିର୍ଝର — ଶ୍ରୀ ରାମ ରସ ପରଶ ପରମ ଆହ୍ଲାଦ ଦାୟିନୀ ଅପୂର୍ବ ମନ୍ଦାକିନୀ ଧାରା ଅଟେ ।

ଅପୂର୍ବ ଏ ସୃଷ୍ଟି ରସ ରକାର— ଏ ସୃଷ୍ଟିର ରଚନା ମଧ୍ୟ ଅପୂର୍ବ ରସ "ର" କାର ରେ ଭରା । ରକାର ଏକ ପରମ ସତ୍ୟ ରେ ପରିପୂର୍ଣ୍ଣ ଅଟେ ।

ଶ୍ରୀ ରାମ ରସ ସ୍ପର୍ଶ ପରମ ଆହ୍ଲାଦ ଦାୟିନୀ ଅପୂର୍ବ ମନ୍ଦାକିନୀ ଧାରା ଅଟେ । ଏ ସୃଷ୍ଟିର ରଚନା ମଧ୍ୟ ରସ ରତ୍ନାକର ର ବର୍ଣ୍ଣାକ୍ଷର ରେ ଭରା ।

ଓଁ

ଅପୂର୍ବ ଅକାର ଦିବ୍ୟ ମାଧୁରୀ
ଯହିଁ ସପ୍ତ ସିନ୍ଧୁ ମହିମା ଭୁରୀ ॥

\+ + +

ଅପୂର୍ବ ଅକାର—ଶିବ ମଙ୍ଗଳମୟ
ଦିବ୍ୟ ମାଧୁରୀ—ସତତ ଯେ ମାଧୁର୍ଯ୍ୟରେ ଭରା ।

ଯହିଁ ସପ୍ତସିନ୍ଧୁ—ଚରାଚର ବିଶ୍ୱ (ବ୍ରହ୍ମାଣ୍ଡ)
ମହିମା ଭୁରୀ—ଯାର ମହିମା ଗାନ କରୁଅଛି ।

ଯେ ସତତ ମାଧୁର୍ଯ୍ୟରେ ଭରା । ଚରାଚର ବିଶ୍ୱ ଯାର ମହିମା ଗାନ କରୁଅଛି ସର୍ବୋପରି "ଅ" ବର୍ଣ୍ଣାକ୍ଷର ଅଟେ ।

ଓଁ

ଯହିଁ ସପ୍ତବିନ୍ଦୁ ଭଜେ ନିଳୟ
ମହାବର୍ଣ୍ଣ ଯହିଁ ମଙ୍ଗଳ ମୟ ।

\+ \+ \+

ଯହିଁ ସପ୍ତବିନ୍ଦୁ — ଯାହାର ଶରୀରରେ ସପ୍ତଲୋକ
ଭଜେ ନିଳୟ — ଲୀନ ହୋଇଯାଏ
ମହାବର୍ଣ୍ଣ ଯହିଁ — ଯେଉଁଠାରେ ମଙ୍ଗଳମୟ 'ମ'
ବର୍ଣ୍ଣାକ୍ଷର
ମଙ୍ଗଳମୟ — ପରମ ହଂସ ରୂପ ଧାରଣ ପୂର୍ବକ
'ସୁନ୍ଦର" ନାମକୁ ବହନ କରେ । ଅର୍ଥାତ୍ ସତ୍ୟ
ଶିବ, ସୁନ୍ଦର = ରାମ ଅଟନ୍ତି ।

ଯାହାର ଶରୀରରେ ସପ୍ତଲୋକ ଅବସ୍ଥାନ କରେ । ପୁନଃ ଯେଉଁଠାରେ ମଙ୍ଗଳମୟ 'ମ'ବର୍ଣ୍ଣାକ୍ଷର ପରମ ହଂସ ରୂପ ଧାରଣ ପୂର୍ବକ "'ସୁନ୍ଦର" ନାମକୁ ବହନ କରେ, ସେହି ସତ୍ୟ, ଶିବ, ସୁନ୍ଦର ଶ୍ରୀ ରାମ ଅଟନ୍ତି ।

ଓଁ

ଶାନ୍ତାକାର ରାମ ମଙ୍ଗଳ ଧୂପ
କାନ୍ତାକାର ରାମ ଅବଧ ଭୂପ ॥

× × ×

ଶାନ୍ତାକାର ରାମ—ପରମ ଶାନ୍ତ ଆକାର ରାମ ।
ମଙ୍ଗଳ ଧୂପ—ମଙ୍ଗଳ ବିଭୂତି ଯୁକ୍ତ ।
କାନ୍ତାକାର ରାମ—ସ୍ୱଇଚ୍ଛାରେ କାନ୍ତା ବରଣ କାରୀ ।
ଅହେତୁକ କୃପାରେ ମାୟା ଯୁକ୍ତ ।
ଅବଧ ଭୂପ—ଅଯୋଧ୍ୟାପତି ପୂର୍ଣ୍ଣ ଜ୍ଞାନ ମଣ୍ଡଳ ।

ଯେ ପୂର୍ଣ୍ଣ ଜ୍ଞାନ ମଣ୍ଡଳାଧୀଶ, ମଙ୍ଗଳ ବିଭୂତି ଯୁକ୍ତ ପରମ ଶାନ୍ତାକାର ଅହେତୁକ କୃପାରେ ମାୟାଯୁକ୍ତ ସେହି କାନ୍ତାକାର (ସ୍ୱ ଇଚ୍ଛାରେ କାନ୍ତା ବରଣକାରୀ) ଶ୍ରୀ ରାମ ଅଟନ୍ତି ।

ଓଁ

## ମହା ଯୋଗମାୟା ବିଦେହ ସୁତା
## ଜ୍ୟୋତି ଜ୍ୟୋତିର୍ମୟୀ ଶକ୍ତି ସରିତା ॥

+ + +

ମହା ଯୋଗମାୟା = ସତତ ସେ ଯୁକ୍ତ ॥

ପକ୍ଷାନ୍ତରେ ସମୁଦାୟ ଜଗତରେ ଯା'ର ରଚନା ॥

ଯାଙ୍କ ହୃଦୟରେ ପରମ ତତ୍ତ୍ୱ ଆବୃତ ଥାଏ ॥

ସର୍ବୋପରି ସେ ଜଗତ୍ ଜନନୀ ଜଗଦମ୍ବା ।

ବିଦେହ ସୁତା = ବୈଦେହୀ ( ସେ ମହାଶୂନ୍ୟକୁ ଧାରଣ କରେ ) ସେ ମହାଶୂନ୍ୟକୁ ବ୍ରହ୍ମରୂପୀ ବ୍ରହ୍ମ ଅଣ୍ଡରେ ପରିଣତ କରେ ॥

ଜ୍ୟୋତି ଜ୍ୟୋତିର୍ମୟୀ = ସେ ପରମ ଜ୍ୟୋତିରେ ସତତ ପ୍ରକାଶ ମାନ ପୁନଃ ଯା'ର ନିଜର ପୂର୍ଣ୍ଣ ଜ୍ୟୋତି ଅଛି ॥

ଶକ୍ତି ସରିତା = ସେ ଅନନ୍ତ ଶକ୍ତିର ଜନ୍ମଦାତ୍ରୀ ( ଶକ୍ତିସମୂହ ଯାହାକୁ ଆଶ୍ରୟ କରି ସ୍ୱତନ୍ତ୍ରତା ଲାଭ କରନ୍ତି ) ॥

ସେ ସତତ ଯୋଗ ଯୁକ୍ତ । ପୂର୍ଣ୍ଣ ଜଗତ ଯାର କୃପା ବିକାଶ ମାତ୍ର । ସେ ପରମ ଜ୍ୟୋତିର୍ମୟୀ ବିନ୍ଦୁ ନାଦାତ୍ମିକା ( ବିନ୍ଦୁଯୁକ୍ତ ) । ସେ ଅନନ୍ତ ଶକ୍ତିର ଜନ୍ମଦାତ୍ରୀ, ସେହି ବିଦେହ ନନ୍ଦିନୀ ଜଗଦମ୍ବା ଜନନୀ ।

ଓଁ

**ଜୀବ ରୂପା ଯହିଁ ଲକ୍ଷ୍ମଣ ଜନ୍ମା**
**ଅଶେଷ ମହିମା ଶେଷ ଅଜନ୍ମା ॥**

\+ \+ \+

ଜୀବ ରୂପ ଯହିଁ = ଜୀବାତ୍ମା ରୂପରେ ଯେ ବିରାଜମାନ ॥
ପୁନଃ ସମୁଦାୟ ଜୀବ ଜଗତ୍ ତଥା ବିଶ୍ୱ ବ୍ରହ୍ମାଣ୍ଡ ଯାହାର ଦେହରେ ଗ୍ରଥିତ ॥
ଲକ୍ଷ୍ମଣ ଜନ୍ମା = ଯେ ଲକ୍ଷ୍ମଣ ରୂପରେ ଜନ୍ମ ॥
ଅଶେଷ ମହିମା = ଯାହାର ମହିମା ଅଶେଷ ॥
ଶେଷ ଅଜନ୍ମ = ଯା'ର ନାମ ଅଜନ୍ମା ଶେଷ ଦେବ ॥ ଯେ ଚିତ୍ ରୂପ ॥

ଯେ ସମୁଦାୟ ଜଗତ୍‌କୁ ନିଜ ଶରୀରରେ ଗ୍ରଥନ କରିଅଛନ୍ତି । ଯେ ଜୀବାତ୍ମା ରୂପରେ ନିତ୍ୟ ବିରାଜମାନ କରେ । ଯାହାର ମହିମା ଅଶେଷ । ଯେ ଅଜନ୍ମା ଭଗବାନ୍ ଚିତ୍ ଶେଷ ଦେବ ଅଟେ । ସେହି ପରମପାଦ ପ୍ରେମୀ ଲକ୍ଷ୍ମଣ—ଜନ୍ମା ଲକ୍ଷ୍ମଣ ଅଟନ୍ତି ।

ଓଁ

ବନ୍ଦୁ ଚିଦାନନ୍ଦ ଶ୍ରୀରାମ ମୂର୍ତ୍ତି
ଶୁଭ୍ରା ଅର୍ଦ୍ଧଚନ୍ଦ୍ର ଶ୍ରୀରାମ କୀର୍ତ୍ତି ॥

ବନ୍ଦୁ ଚିଦାନନ୍ଦ = ବନ୍ଦୁ ସଚ୍ଚିଦାନନ୍ଦ ।
ଶ୍ରୀରାମ ମୂର୍ତ୍ତି — ଯେ ମଙ୍ଗଳକାରୀ ରାମ ମୂର୍ତ୍ତିରେ ବିରାଜ ମାନ ।
ଶୁଭ୍ରା ଅର୍ଦ୍ଧଚନ୍ଦ୍ର = ପରମ ଲକ୍ଷ୍ମୀ ସୀତା ରୂପା ନାମ ରୂପା—ସେ ଅର୍ଦ୍ଧଚନ୍ଦ୍ର ଅଟନ୍ତି ।
ଶ୍ରୀରାମ କୀର୍ତ୍ତି = ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ଚନ୍ଦ୍ରଙ୍କର ଯେ କୀର୍ତ୍ତି ସ୍ୱରୂପା ଅଟନ୍ତି ।

ଯେ ବନ୍ଦୁ ରୂପ ସଚ୍ଚିଦାନନ୍ଦ । ଯେ ପରମ ମଙ୍ଗଳମୟ । ସେହି ଶ୍ରୀରାମ ମୂର୍ତ୍ତିରେ ବିରାଜମାନ ଯେ ଅର୍ଦ୍ଧ ମାତ୍ରା । ଯେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ଚନ୍ଦ୍ରଙ୍କ କୀର୍ତ୍ତି ସ୍ୱରୂପା, ସେହି ପରମ ଲକ୍ଷ୍ମୀ ସୀତା ଅଟନ୍ତି ।

ଓଁ

**କ୍ଷଣଜନ୍ମା ଶେଷ ଲକ୍ଷ୍ମଣ ଓଜ**
**ମହାତେଜ ବିନ୍ଦୁ ଓଁକାର ବୀଜ ॥**

\+ \+ ×

କ୍ଷଣ ଜନ୍ମା ଶେଷ = ଅଜନ୍ମା ଶେଷ ।
ଯାର ଜନ୍ମ ସ୍ୱ ଇଚ୍ଛାରେ, ସେ କ୍ଷଣ ଜନ୍ମା ।
ଅର୍ଥାତ୍ ଜୀବ ଜଗତର ମଙ୍ଗଳ ପାଇଁ ଯେ ଦେହ
ଧାରଣ କରେ ।
ଲକ୍ଷ୍ମଣ ଓଜ = ଯେ ପରମ ତେଜ, ଓଜ,
ଯାହାକୁ ଆଶ୍ରୟ କରେ ।
ମହାତେଜ ବିନ୍ଦୁ = ଯାହାର ହୃଦୟରେ ମହତ
ବିନ୍ଦୁ ସଦା ବର୍ତ୍ତମାନ ।
ଓଁକାର ବୀଜ = ଯେ ବୀଜ ମନ୍ତ୍ର ଓଁକାର ଅଟେ ।

ଯେ ଅଜନ୍ମା ଶେଷ । ଯେ ପରମ ଓଜ ଅର୍ଥାତ୍
ତେଜ ଯାହାର ଶରୀରରେ ଆଶ୍ରୟ ନିଏ । ଯାହାର
ହୃଦୟରେ ପରମ ବିନ୍ଦୁ ସଦା ବର୍ତ୍ତମାନ । ସେହି
ଓଜ ରୂପ ଲକ୍ଷ୍ମଣ ବୀଜାକ୍ଷର ଓଁକାର ଅଟନ୍ତି ।

ଓଁ

**ବୀଜ ମନ୍ତ୍ର ଏହି ଜ୍ଞାନ ତନ୍ତ୍ରରେ**
**ସର୍ବ ବିଦ୍ୟାଧର ଧ୍ୟାନ ଯନ୍ତ୍ରରେ ॥**

+ + +

ବୀଜ ମନ୍ତ୍ର ଏହି—ଏହାହିଁ ବିଶ୍ୱ ବ୍ରହ୍ମାଣ୍ଡରେ ବୀଜ ମନ୍ତ୍ର ।

ଜ୍ଞାନ ତନ୍ତ୍ରରେ—ଜ୍ଞାନରେ ଯାର ବିକାଶ ।

ସର୍ବ ବିଦ୍ୟାଧର—ଯେ ସମସ୍ତ ବିଦ୍ୟାର ଆଧାର

ଧ୍ୟାନ ଯନ୍ତ୍ରରେ—ଧ୍ୟାନରେ ଯାର ଦେଖା ମିଳେ ।

ଏହାହିଁ ବିଶ୍ୱବ୍ରହ୍ମାଣ୍ଡର ବୀଜ ମନ୍ତ୍ର । ଜ୍ଞାନରେ ଯାର ବିକାଶ । ଯେ ସମସ୍ତ ବିଦ୍ୟାର ଆଧାର । ସର୍ବୋପରି ଧ୍ୟାନରେ ଯାର ପରମ ସାକ୍ଷାତ ମିଳେ ।

ଓଁ

**ଜ୍ଞାନ ସରସୀରେ ମୁଖ ପଖାଳି**
**ଦେଖିଲେ ମହତ୍ତ ଦିଶଇ ଝଳି ॥**

+ + +

ଜ୍ଞାନ ସରସୀରେ—ଜ୍ଞାନ ରୂପ ସରସୀରେ (ଜ୍ଞାନ ଲୋକରେ)

ମୁଖ ପଖାଳି—ମୁଖ ଧୌତ କରି ଅର୍ଥାତ୍ ଜ୍ଞାନ ନେତ୍ର ଉନ୍ମୋଚନ କରି ।

ଦେଖିଲେ ମହତ—ମହତ ଦର୍ଶନ କଲେ;ତତ୍ତ୍ୱର ଅନୁସନ୍ଧାନ କଲେ ।

ଦିଶଇ ଝଳି—ସେ ପରମ ତତ୍ତ୍ୱ ରୂପ ଦେଦୀପ୍ୟମାନ ।

ଜ୍ଞାନ ରୂପ ସରସୀରେ ମୁଖ ଧୌତ କରି ଅର୍ଥାତ୍ ଜ୍ଞାନ ନେତ୍ର ଉନ୍ମୋଚନ ପୂର୍ବକ ଦୃଷ୍ଟିପାତ କଲେ, ଦେଦୀପ୍ୟମାନ ମହତ୍ ତତ୍ତ୍ୱର ଚରମ ପ୍ରକାଶ ଲାଭ ହୁଏ ।

ଓଁ

ପିଚ୍ଛିଳ ପାବଚ୍ଛ କର୍ମର ଗତ
ଚଢି ପାରେ ଯେଉଁ ବୁଧ ସନ୍ତତ ॥

\+ \+ \+

ପିଚ୍ଛିଳ ପାବଚ୍ଛ=ଚିକ୍‌କଣ ପାବଚ୍ଛ, ମସୃଣ, ସୋପାନ
କର୍ମର ଗତ—କର୍ମ ଯୋଗ ଆଶ୍ରୟ ।
ଚଢ଼ି ପାରେ ଯେଉଁ=ଯେ ଏହି ସୋପାନ ଚୟକୁ ଆରୋହଣ କରେ ।
ବୁଧ ସନ୍ତତ—ଯେଉଁ ଜ୍ଞାନରୂଢ ସ୍ଥିତ ପ୍ରଜ୍ଞ ।

କର୍ମ ଯୋଗ ଆଶ୍ରୟ ମସୃଣ ସୋପାନ ସଦୃଶ ଅଟେ । ଏହି ଦୁରାରୋହ ସୋପାନଚୟକୁ ଯେଉଁ କୃତ ଜନ୍ମା ପୁଣ୍ୟାତ୍ମା ଆରୋହଣ କରପାରେ ସେହି ଜ୍ଞାନ ରୂଢ ସ୍ଥିତପ୍ରଜ୍ଞ ଅଟେ ।

ଓଁ

## ନାଟ ମନ୍ଦିରରେ ଲଗିଛି ହାଟ
## ତାରେ ଯୋଗମାୟା ଛାଡ଼ଇ ବାଟ ॥

× × ×

ନାଟ ମନ୍ଦିରରେ—ହୃଦୟ ଗୁମ୍ଫାରେ ।
ଲଗିଛି ହାଟ—ଭବ ବଜାର ।
ତାରେ ଯୋଗମାୟା — ନିଷ୍କାମ କର୍ମଯୋଗ ସାଧନରେ ଯେ ଶୁଦ୍ଧି ପାଇଅଛି (ଅର୍ଥାତ୍) ତାହାକୁ ଜଗତ ଜନନୀ (ପରମ୍ବା) ଛାଡ଼ଇ ବାଟ =ବାଟ ଛାଡ଼ ଦିଏ ଅର୍ଥାତ୍ ମାୟା ନିବାରିତ ହୁଏ । ଯୋଗୀ ଜ୍ଞାନ ଲୋକକୁ ଗମନ କରେ ।

ନିଷ୍କାମ କର୍ମଯୋଗ ସାଧନାରେ ଯେଉଁ ମୁକ୍ତାତ୍ମା ଶୁଦ୍ଧି ଲାଭ କରିଅଛି, ହୃଦୟ ଗୁମ୍ଫାରେ ସଞ୍ଚିତ ଥିବା ଭବ ବଜାରରୁ (ଭବ ଚକ୍ରରୁ) ତାର ଉଦ୍ଧାର ହୋଇଯାଏ । ଜଗତ୍ ଜନନୀ ତାହାକୁ ହିଁ ସମାଦରରେ ବ୍ରହ୍ମରନ୍ଧ୍ରର ମାର୍ଗ ଉନ୍ମୋଚନ ପୂର୍ବକ ଜ୍ଞାନଲୋକକୁ ନେଇଯାଏ ।

ଓଁ

**ଭକତରେ ନାହିଁ ଶକତ ଲେଶ**
**ଭାବେ ବଶ ହୁଏ ମହା ମହେଶ ॥**

\+ + +

ଭକତରେ ନାହିଁ—ଭକ୍ତି ଏକ ସ୍ୱତନ୍ତ୍ର ମାର୍ଗ
ଏଥିରେ ରାମ ରସ ମଜ୍ଜନ ସାରସ୍ୱତ ।
ଶକତ ଲେଶ—କୌଣସି ଏକ ଶକ୍ତିର ସ୍ତୂପ
ଏହାର ଉପରେ ନାହିଁ । ଭାବ। ବେଶହିଁ ଆବଶ୍ୟକ
ଭାବେ ବଶ ହୁଏ—ଅନନ୍ୟ ଅନୁରାଗ ବଳରେ
ଅନନ୍ୟ ତତ୍ତ୍ୱର ଲାଭ ହୁଏ ।
ମହା ମହେଶ—ପରମ ପୁରୁଷାକାର । ସତ୍ୟ,
ଶିବ, ସୁନ୍ଦର ପରମାତ୍ମା ରାମ ।

ଭକ୍ତି ଏକ ସ୍ୱତନ୍ତ୍ର ମାର୍ଗ । ଏଥିରେ ରାମ ରସ ମଜ୍ଜନ ସାରସ୍ୱତ । ଯୋଗମାୟାର ଜଟିଳ ରୂପ ଏଥିରେ ପ୍ରଭାବ ବିସ୍ତାର କରି ପାରେନା । ଭାବାବେଶେ ଅର୍ଥାତ୍ ଅନନ୍ୟ ଅନୁଭବ ବଳରେ ପରମ ତତ୍ତ୍ୱର ଲାଭ ହୁଏ ।

ଓଁ

ଜ୍ଞାନ କର୍ମ ଭାବ ଭକତି ଯଶା
ଅବିଦ୍ୟା ଦର୍ଶନେ ନ ଟୁଟନ୍ତି ଭରଷା ॥

\+ + +

ଜ୍ଞାନ କର୍ମ ଭାବ—ଜ୍ଞାନ ଓ କର୍ମଯୋଗକୁ ଆଶ୍ରୟ କରିଥିବା ।

ଭକତି ଯଶା—ସମାମ୍ନିକା ଭକ୍ତିରେ ଓତଃ ପ୍ରୋତଃ ଅର୍ଥାତ୍ ଯାହାର ହୃଦୟରେ ସତ୍ୟ ପ୍ରତି ଗଭୀର ଅନୁରାଗ ଜନ୍ମେ ବା ଲାଭ କରିଅଛି । ପ୍ରଭୁ ପଦାରବିନ୍ଦ ଚିନ୍ତା ବ୍ୟତୀତ ଯାହାର ଅନ୍ୟ ଚିନ୍ତା ନାହିଁ । ଈଶ୍ୱର ଯାହାର ସର୍ବସ୍ୱ ।

ଅବିଦ୍ୟା ଦର୍ଶନେ— (ବନ୍ଧ) ବିଷୟ ଗନ୍ଧି ଯାହାର ଶେଷ ହୋଇନାହିଁ । ରିପୁମାନେ ଯାହାର ସହଚର ।

ନ ଟୁଟେ ଭରସା—ଜ୍ଞାନ, କର୍ମ ଓ ଭକ୍ତି କୌଣସି ମାର୍ଗ ଯାହାର ନାହିଁ । ମହା ସତ୍ୟର ସାକ୍ଷାତ ଲାଭ ତା ପକ୍ଷରେ ଏକାନ୍ତ ଅସମ୍ଭବ ।

ପରମ ଯଶସ୍ୱୀ ଜ୍ଞାନ, କର୍ମ ଅଥବା ଭକ୍ତି ଯେ କୌଣସି ଏକ ମାର୍ଗର ଆଶ୍ରୟ ଲାଭ କରିଥାଏ । ପ୍ରତିମାର୍ଗ ସ୍ୱ ଅନୁଭବ ଯୋଗରେ ସତ୍ୟାଭିଳାଷୀ । ମାତ୍ର ଯେ ଅବିଦ୍ୟାଯୁକ୍ତ ବନ୍ଧ ଯାହାର ବିଷୟର ଶେଷ ହୋଇନାହିଁ, ଯେ ରିପୁଯୁକ୍ତ ଯାହାର କୌଣସି ମାର୍ଗ ନାହିଁ ତାହାର ପକ୍ଷରେ ସତ୍ୟର ସାକ୍ଷାତ ବିଡମ୍ବନା ମାତ୍ର ।

ଓଁ

**ବିଦ୍ୟାବଳେ ବଦ୍ଧ ଲଭେ ମୁକତି**
**ଗୁରୁ କୃପା ଯହିଁ ସିଦ୍ଧି ଶକତି ॥**

\+ + +

ବିଦ୍ୟା—ଆଲୋକ (ଅବିଦ୍ୟା ଅନ୍ଧକାର)

ବିଦ୍ୟାବଳେ—ଜ୍ଞାନାଲୋକ ବଳରେ ।

ବଦ୍ଧ—ବନ୍ଧନ ଯୁକ୍ତ (ବିଷୟ ବାସନାରେ ଯେ ବନ୍ଧା)

ମୁକ୍ତ ଯେ (ବିଷୟ ବାସନାରୁ ଯେ ଅତିକ୍ରମ କରିଅଛି)

ଲଭେ—ଲାଭ କରେ

ମୁକତି—ମୁକ୍ତି (ଯେ ତତ୍ତ୍ୱ ଯୁକ୍ତ)

ଗୁରୁ କୃପା—ମହତ କୃପା, ଦୟା ।

ଯହିଁ—ଯେଉଁଠାରେ ।

ସିଦ୍ଧି—ଯୋଗ ସାଧନାର ଅନୁକୂଳ ମାର୍ଗର ସୀମା, ଯେ ଦୃଷ୍ଟି ।

ଶକତି—ବଳ ଯାର ବଳରେ ତତ୍ତ୍ୱ ଚର୍ଯ୍ୟା ଅନୁଭବ ସୁଗମ ହୋଇ ପଡ଼େ ।

ଜ୍ଞାନାଲୋକ ବଳରେ ବଦ୍ଧ (ବନ୍ଧନମୁକ୍ତ) ବ୍ୟକ୍ତି ବଳପୂର୍ବକ ଅତିକ୍ରମଣ ପୂର୍ବକ ମହାସତ୍ୟ ଆଡ଼କୁ ଅଗ୍ରସର ହୁଏ । ଏହି ଜ୍ଞାନ ଲୋକ ପ୍ରାପ୍ତି ଶିବରୂପୀ ଗୁରୁଙ୍କ ମହତ୍ କୃପା ବିନା କଦାପି ସମ୍ଭବ ନୁହେଁ । ଗୁରୁଙ୍କ ଅପାର କୃପା ବଳରେ ଦୁରୂହ ତତ୍ତ୍ୱ ଚିନ୍ତାର ମାର୍ଗ ସୁଗମ ହୋଇଥାଏ ।

ଓଁ

**ପୁଣ୍ୟବାର ଭର୍ ଅଚ୍ଛ ସରସୀ**
**ମଝି ଦୀପ ଦଣ୍ଡି ଆଭ୍ର କରସି ॥**

\+ \+ \+

ପୁଣ୍ୟ—ପବିତ୍ର ।
ବାର—ଜଳ ।
ଭର—ପରିପୂର୍ଣ୍ଣ ।
ଅଚ୍ଛ—ପ୍ରତିଷ୍ଠିତ ।
ସରସୀ—ମନୋରମ ପୁଷ୍କରିଣୀ ।
ମଝି—ମଧ୍ୟ ଭାଗରେ ।
ଦୀପଦଣ୍ଡି—ପ୍ରତ୍ୟେକ ପୁଷ୍କରିଣୀର ଠିକ୍ ମଧ୍ୟ ଭାଗରେ ଏକ ପ୍ରସ୍ତର ଦଣ୍ଡ ନିର୍ମିତ ହୋଇଥାଏ । ଏହାର ନାମ ଦୀପ ଦଣ୍ଡି ।
ଆଭ୍ର—ଦୀପ୍ତିମାନ ଶୋଭା ।
କରସି—ଆକର୍ଷଣ କରେ ।

ପବିତ୍ର ଜଳ ପରିପୂର୍ଣ୍ଣ । ଏକ ମନୋରମା ସରସୀ ସେଠାରେ ପ୍ରତିଷ୍ଠିତ ଅଛି । ଏହି ଅନୁପମ ସରସୀର ମଧ୍ୟ ଭାଗରେ ଏକ ଅପୂର୍ବ ଦୀପ୍ତିମାନ ଦୀପଦଣ୍ଡି ଶୋଭାୟମାନ ।

ଓଁ

**ଚୂଳେ ଦୀପଦଣ୍ଡି ମରାଳ ଶୋଭା**
**ତୃତୀୟ ନୟନେ ନୟନ ଲୋଭା ॥**

+ + +

ଚୂଳେ—ଚୂଡ଼ାରେ ଶୀର୍ଷ ଭାଗରେ । ଚୂଳରେ
ଦୀପଦଣ୍ଡି—ପ୍ରସ୍ତର ନିର୍ମିତ ଦଣ୍ଡ ଯାହାର
ଉପରେ ଏକ ଦୀପ ବିଦ୍ୟମାନ ଥାଏ ।
ମରାଳ—ରାଜହଂସ ।
ଶୋଭା—ଶୋଭାୟମାନ ।
ତୃତୀୟ ନୟନେ—ଜ୍ଞାନ ନେତ୍ରରେ ।
ନୟନ ଲୋଭା—ନେତ୍ର ରଞ୍ଜକ ।

ଦୀପ ଦଣ୍ଡିର ଚରମ ଚୂଡ଼ାରେ ଅନୁପମ ଲାବଣ୍ୟଭରା ଏକ ଜୋଡ଼ିମୟ ଶ୍ୱେତ ରାଜହଂସ ଅପୂର୍ବ ରୂପଶ୍ରୀ ରେ ଭାସମାନ । ତୃତୀୟ ନେତ୍ରର ପ୍ରାପ୍ତି ବିନା, ଏ ଅପରୂପ ସରସୀ ତଦୁପରି ଶ୍ୱେତ ମରାଳ ରାଜିର ବର୍ଣ୍ଣନ କଳ୍ପନା ମାତ୍ର ।

ଓଁ

**ସୁବର୍ଣ୍ଣ ପାଚେରୀ ପରଖା ଘୂର**
**ଝଁଳେ ରତନ କି ଶୋଭା ବଘୂର ॥**

+ + +

ସୁବର୍ଣ୍ଣ = ଉତ୍ତମ ବର୍ଣ୍ଣ ସୁନା ପାଚେରୀ = କାନ୍ଥ ।
ପରଖା-ବେଢ ।
ଘୂର = ଘେରାଛି ।
ଝଁଳେ = ଦୀପ୍ତି ମାନ ହୁଏ ।
ରତନ କି ? = ରତ୍ନ ସମୂହ ।
ଶୋଭା = ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଜଡ଼ିତ ।
ବଘୂର—ନିଜକୁ ନିଜେ ବଘୂର କର ।

ଏହି ପୁଣ୍ୟ ସଲିଳା ସରସୀର ଚତୁର୍ଦ୍ଦିଗରେ ସୁବର୍ଣ୍ଣ ପାଚେରୀ ଦେବ । ସେତେ ସେପରି ପ୍ରାଚୀର ନିଚୟ ଅମୂଲ୍ୟ ରତ୍ନମାଳା ଖଚିତ ନିଜ ଶୋଭାରେ (ସ୍ବରେ) ନିଜେ ବିମୁଗ୍ଧ ହୋଇ ପର ପ୍ରଷ୍ଫୁମାନ ହେଉ ଅଛନ୍ତି ।

ଓଁ

ସ୍ୱର ଘାଟ ସ୍ୱର ପରଖା ମଝି
ଆହା ସେ ବିଧାତା ଦେଇଛି ଖଞ୍ଜି ।

\+ \+ \+

ସ୍ୱର ଘାଟ = ସ୍ୱରୋଟି ଘାଟ ।
ସ୍ୱର ପରଖା = ସ୍ୱର ପାଟେଶ୍ୱ ।
ମଝି = ମଧ୍ୟ ଭାଗରେ ।
ଆହା ସେ ବିଧାତା = ଓହୋ, ସେ ସ୍ରଷ୍ଟା ।
ଦେଇଛି ଖଞ୍ଜି = ବଡ଼ିତ୍ର ଶୋଭାରେ ନିର୍ମାଣ କରି ଦେଇଅଛି ।

ଏହି ସ୍ୱରୋଟି ପରିଖାର ମଧ୍ୟ ଭାଗରେ ଅତି ଚିତ୍ତାକର୍ଷକ ସ୍ୱରୋଟି ମନୋରମ ଘାଟ ନିର୍ମାଣ ହୋଇଅଛି । ସତେ ଯେପରି ସ୍ରଷ୍ଟା କଳ୍ପ ଛପୂକାଟ ସାଧନ ବଳରେ ବଚିତ୍ର ଶୋଭା ସମ୍ଭାର ଯୁକ୍ତ ଏକ ଅପୂର୍ବ ଘାଟର ନିର୍ମାଣ କରିଅଛି ।

ଓଁ

ମାଣିକ୍ୟ ବମ୍ବର ସୋପାନ ସାତ
ପଦ୍ମରାଗ ରଜେ ଅତି ଗୁପତ ।

\+ × +

ମାଣିକ୍ୟ = ରତ୍ନ ବିଶେଷ । ନବ ରତ୍ନରୁ ଏକ ।
ବମ୍ବର = ଆମ୍ବର ( ଡ଼ାଳମ୍ବ ବୀଜର କାନ୍ତି )
ସୋପାନ ସାତ = ସାତୋଟି ପାବଛ ।
ପଦ୍ମରାଗ = ମଣି ବିଶେଷ ।
ରଜେ- ଚୂର୍ଣ୍ଣରେ
ଅତି ଗୋପନ = ଅତି ଗୁହ୍ୟ ( ଅତି ଗୋପନରେ)

ପ୍ରତି ଘାଟରେ ମାଣିକ୍ୟ ବର୍ଣଯୁକ୍ତ ସାତୋଟି ମଞ୍ଜୁଳ ସୋପାନ ନିର୍ମିତ ହୋଇଅଛି । ଉକ୍ତ ସୋପାନ ଶ୍ରେଣୀ ପଦ୍ମରାଗ ରଜରେ ଅତି ସତର୍କତାର ସହିତ ଆବୃତ ହୋଇଅଛି । ଏହା ପରମ ଗୋପନ ଅଟେ ।

ଓଁ

**ଯତନେ ଜଡ଼ିତ ରହିଛନ୍ତି ତହିଁ**
**ଦିଗଙ୍ଗନା ମୁଖେ ମୁକୁଳା ରହି ।**

+ + +

ଯତନେ ଜଡ଼ିତ = ଯତ୍ନ ସହକାରେ ( ଅତି ସାବଧାନତାରେ ) ସନ୍ଧିତ ଯୋଡ଼ା( ଖଞ୍ଜା ) ହୋଇଅଛନ୍ତି ।
ରହିଛନ୍ତି ତହିଁ = ପ୍ରତି ଘଟେରୀର ମଧ୍ୟ ଭାଗରେ ଏହା ବିରାଜିତ ।
ଦିଗଙ୍ଗନା ମୁଖେ = ଦିଗ୍ ଅଙ୍ଗନାମାନଙ୍କ ମୁଖ କରି ସମ୍ମୁଖରେ ମୁକୁଳା ରହି = ଶୋଭା ଶ୍ରୀର ପରିବର୍ଦ୍ଧିତ ଅବସ୍ଥାରେ ।

ଉତ୍ତମ ବର୍ଣ୍ଣ ମାନଙ୍କରେ ଶୋଭାୟମାନ ସୁନିର୍ମଳ ଜଳ ରାଶିରେ ଭସ ସୁରଭିତ ସରସୀର ଘାଟ ଚତୁଷ୍ଟୟ ଦିଗଅଙ୍ଗନା ସମ୍ମୁଖରେ ସଦା ଉନ୍ମୁକ୍ତ ।

ଓଁ

**ଏ ସୁରସୀ ନୀର ପିଇବା ଆଶା**
**ନିର୍ମଳ ହୃଦୟ ମାତ୍ର ଭରସା ।**

\+ + +

ଏ ସରସୀ ନୀର—ଏ ଜଳାଶୟର (ପୁଷ୍କରିଣୀର) ଜଳ ।

ପିଇବା ଆଶା—ଲାଭ କରିବା ଆକାଂକ୍ଷା ।

ନିର୍ମଳ ହୃଦୟ—ହୃଦୟର ନିର୍ମଳତା ( ଯାର ହୃଦୟ, କାମ, କ୍ରୋଧ, ଲୋଭ ଆଦି ରିପୁ ବର୍ଗଙ୍କ ଅଚ୍ଛାଦିତ ।

ମାତ୍ର ଭରସା—ଏକମାତ୍ର ଭରସା (ଉପାୟ) ନିର୍ଭର କରେ ।

ଏ ସରସ ସରସୀ ଆନନ୍ଦ ନୀର ଭରା । ନିର୍ମଳ ହୃଦୟ ବ୍ୟତୀତ ଏହାର ଲାଭ ଆଶା ଏକାନ୍ତ ବିଡ଼ମ୍ବନା । ଯାର ହୃଦୟ ରିପୁବର୍ଗଙ୍କ ଦ୍ୱାରା ଅଚ୍ଛାଦିତ ନୁହେଁ ପୁନଃ ଯାର ଚତୁଷ୍ ଅନ୍ତଃକରଣୀୟ ବିଶୁଦ୍ଧ ହୋଇଅଛି ସେହି କୃତଜନ୍ମା ଦୁର୍ଲଭ ପୁରୁଷଙ୍କୁ ଏ ଆନନ୍ଦ ନୀର ଲାଭ ହୁଏ ।

ଓଁ

**ଜଗି ଅଛି ହଂସ ଶୂନ୍ୟ ସରସୀ**
**ଅହର୍ନିଶି ଖଣ୍ଡ ମୃଣାଳେ ରସି ।**

\+ \+ \+

ଜଗିଅଛି—ଜାଗ୍ରତ ଅଛି ।
ହଂସ—ରାଜ ହଂସ ।
ଶୂନ୍ୟ—ଯେଉଁଠାକୁ କାହାର ଆଗମନ ନୁହେଁ ।
ସରସୀ—ଜଳାଶୟ । "ଆନନ୍ଦ ଭରା ରସ"
ଅହର୍ନିଶି—ଅହୋରାତ୍ର ( ଦିବାରାତ୍ରି )
ଖଣ୍ଡ ମୃଣାଳ—ପ୍ରେମରସ ପାନରେ
ରସି—ପ୍ରମତ୍ତ ହୋଇ ।

ଏ ଆନନ୍ଦ ରସ ନିର୍ମିତ ଶୂନ୍ୟ ସରସୀର ରକ୍ଷାର୍ଥେ ପ୍ରେମ ରସ ପାନ ପ୍ରମତ୍ତ ବଶତ୍ର ଭକ୍ତ ଯୁକ୍ତ ରାଜହଂସ ନିଷ୍କଳା-ବସ୍ଥାରେ ଅହୋରାତ୍ର ପ୍ରହରୀ ରୂପେ ଦଣ୍ଡାୟମାନ । ଅର୍ଥାତ୍ ଏ ଶୂନ୍ୟ ସରସୀର ଏକ ମାତ୍ର ସାକ୍ଷୀ କୈବଲ୍ୟ ମଣ୍ଡନ ମରାଳରାଜ ।

ଓଁ

**ଦୂରୁ ସରସୀର ଶୋଭା ସୁନ୍ଦର**
**ପାଶେ ମରୀଚିକା ବେଭାର ଭାର ।**

\+ \+ \+

ଦୂରୁ—ଅତିଦୂରରୁ ।
ସରସୀର—ଜଳାଶୟର ।
ଶୋଭା—କମନୀୟତା ।
ସୁନ୍ଦର—ଅତି ଚିତ୍ତାକର୍ଷକ ।
ପାଶେ—ନିକଟକୁ ଗଲେ ।
ମରୀଚିକା—ମୃଗତୃଷ୍ଣା । (ବସନ୍ତ ଋତୁ ଆରମ୍ଭରୁ ଗ୍ରୀଷ୍ମର ଶେଷ ପର୍ଯ୍ୟନ୍ତ ଦୃଶ୍ୟମାନ ହୁଏ । )
ବେଭାର ଭାର—ଆଚରଣ ଭାର ।

ସରସା ସରସୀ ଅତି ଦୂରରୁ ଅତି କମନୀୟ ଦୃଷ୍ଟିପଥାରୂଢ ହୁଏ । ମାତ୍ର ସନ୍ନିକଟବର୍ତ୍ତୀ ହେଲେ ଏହା ଏକ ମୃଗତୃଷ୍ଣା ବ୍ୟତୀତ ଅନ୍ୟ କିଛି ନୁହେଁ । ମହାଶୂନ୍ୟରେ ହିଁ ଏହା ମରୀଚିକା ବତ୍ ।

ଓଁ

**ଘାଟ ଥାଇ ବାଟ ନ ମିଳେ ତହିଁ**
**ଯଦି ବାଟ ମିଳେ ସରସୀ କାହିଁ ।**

\+ \+ \+

ଘାଟ ଥାଇ—ସ୍ୱରୋଟି ଘାଟ ସତତବିଦ୍ୟମାନ ।
ବାଟ—ପଥ, ରାସ୍ତା ।
ନ ମିଳେ ତହିଁ—ଦେଖାଯାଏ ନାହିଁ ( ପଥିକର ଦୃଷ୍ଟି ଗୋଚର ହୁଏ ନାହିଁ )
ଯଦି ବାଟ ମିଳେ—ଯଦି କାରଣ ବଶତଃ (ହେତୁ ପୂର୍ବକ) ପଥ ମାର୍ଗ ମିଳିଯାଏ(ସ୍ୱାଧ୍ୟାୟ ବଳରେ )
ସରସୀ କାହିଁ—ନିକଟକୁ ଗଲେ ( ସରସୀର ) ଜଳାଶୟ ଦୃଷ୍ଟି ଗୋଚର ହୁଏ ନାହିଁ ।
ମରୀଚିକା ବତ୍ ହୁଏ ।

ଏପରି ପୂର୍ଣ୍ଣ ପୁଣ୍ୟମୟ ସରସୀର ଘାଟ ଚତୁଷ୍ଟୟ ସତତ ବିଦ୍ୟମାନ । ପଥିକ ( ମାର ଆଶା ତୃଷ୍ଣାସୀ ) ଶତ ଚେଷ୍ଟା ଫଳେ ଏହାର ସନ୍ଧାନ ଲଭ କରି ପାରେ ନା । ଯଦି କାରଣବଶତଃ ( ହେତୁ ପୂର୍ବକ ) ମାର୍ଗ ଧରି ନେଇ ( ସ୍ୱାଧ୍ୟାୟ ) ବଳରେ ସନ୍ନିକଟବର୍ତ୍ତୀ ହେଲେ ଅପୂର୍ବ ସରସୀ ମରୀଚିକାର ରୂପ ଧାରଣ କରେ ।

ଓଁ

## ହର ରୂପୀ ଗୁରୁ ସୁଦୟା ବଳେ
## ତୃଷା ମେଣ୍ଟିଯାଏ ବାନ୍ଧୁଏ ଜଳେ ।

+ + +

ହର ରୂପୀ ଗୁରୁ—ପରମ କଲ୍ୟାଣମୟ ଶିବ
ରୂପ ଧାରଣ କରିଥିବା ଗୁରୁ ପଥ ପ୍ରଦର୍ଶକ ।
ସୁଦୟା ବଳେ—ଅଶେଷ କୃପା ବଳରୁ ।
କୃପାନିଧିର କୃପାରୁ ଉଚିତ ମାର୍ଗ ମିଳିଥାଏ ।
ସରସୀର ପ୍ରକୃତ ରୂପ ଉପଭୋଗର ସୁବିଧା
ମିଳେ ।
ତୃଷା ମେଣ୍ଟି ଯାଏ—ତୃଷା ନିବାରଣ ହୁଏ ।
ଜ୍ଞାନାଲୋକ ପ୍ରତିଭାତ ହୁଏ ।
ବାନ୍ଧୁଏ ଜଳେ—ଏକ ଗାର ବିନ୍ଦୁରେ ଅର୍ଥାତ୍
କିଞ୍ଚିତ୍ ଗୁରୁ କୃପା ବଳରେ ।

ଗୁରୁରୂପୀ ପରମ କଲ୍ୟାଣମୟ ଶିବଙ୍କ ଅପାର କରୁଣା ବଳରେ ଏ ସରସୀର ଉଚିତ ମାର୍ଗ ମିଳିଥାଏ । ପୁନଃ ଏ ସରସୀର ଏକମାତ୍ର କୃପା ବାରି ବିନ୍ଦୁ ଲାଭରେ ଅନନ୍ତ ଜନ୍ମର ତୃଷାତୁର ପଥହରା ପଥିକର ତୃଷ୍ଣା ସହସା ମେଣ୍ଟିଯାଏ । ତୃପ୍ତି କାମର ସନ୍ଧାନରେ ଆଉ କାମନା ଥାଏ କି ?

ଓଁ

**ଗୁରୁଦ୍ୱାରେ ମିଳେ ଗୁପତ ଜଳ**
**ଆଗ ପଛକଥା କରମ ବଳ ।।**

\+ \+ \+

ଗୁରୁ ଦ୍ୱାରେ—ଗୁରୁଙ୍କ ପଥରେ (ଗୁରୁମାର୍ଗରେ) ମିଳେ । ଲାଭ ହୁଏ ।

ଗୁପତ ଜଳ—ଗୁପ୍ତ ନୀର । ଏହି ଆନନ୍ଦ ସରସୀର ଆନନ୍ଦ ରସ ।

ଆଗପଛ କଥା—କିଏ ଆଗ ପାଏ ଓ କିଏ ପଛରେ ପାଉଥାଏ ମାତ୍ର (ସମସ୍ତେ ଲାଭ କରନ୍ତି)

କରମ ବଳ—କର୍ମ ବଳ ଉପରେ ନିର୍ଭର କରେ । (ତପସ୍ୟା ବଳ) ସ୍ୱ ସାଧନ ଉପରେ ନିର୍ଭର କରେ ।

ଏହି ଆନନ୍ଦ ସରସୀର ଗୋପନ ଆନନ୍ଦ ରସ (ଭାବ) ଗୁରୁ କୃପା ବଳରେ ସମସ୍ତଙ୍କର ଲାଭ ହୋଇଥାଏ । କେହି ତତ୍‌କ୍ଷଣାତ୍ ଲାଭକରେ ତ, କାହାର ବିଳମ୍ବ ଘଟିଥାଏ । ଏହା ପୂର୍ବ କର୍ମ ବଳ ଉପରେ ଅର୍ଥାତ୍ ତପସ୍ୟା ଉପରେ ନିର୍ଭର କରେ ।

ଓଁ

**ସ୍ବର ବର୍ଣ୍ଣି ସ୍ବର ପଥିକ ଯହିଁ**
**ନୀର ଆଶେ ସଦା ଥାଆନ୍ତି ରହି ॥**

\+ \+ \+

ସ୍ବର ବର୍ଣ୍ଣି—ସ୍ବରେଣି ବର୍ଣ୍ଣରେ = ସ୍ବର ପ୍ରକାର =
ସ୍ବର ଜାତିର, ସ୍ବରେଣି ରୂପର ।
ପଥିକ—ବାଟୋଇ, ମାର୍ଗାନ୍ବେଷୀ ।
ଯହିଁ—ଯେଉଁଠାକୁ
ନୀର ଆଶେ—ଜଳଲାଭ ଆଶାରେ ।
ସଦା—ସବୁବେଳେ ।
ଥାଆନ୍ତି ରହି—ସତତ ବିଦ୍ୟମାନ ଥାଆନ୍ତି ।
୧ ଆର୍ତ୍ତ; ୨ ଜିଜ୍ଞାସୁ, ୩ ଅର୍ଥୀ, ଓ ୪ ଜ୍ଞାନୀ
(୧ ଜ୍ଞାନ, ୨ କର୍ମ, ୩ ଭକ୍ତି ଓ ୪ ଚମତ୍କାର)

ମତର ଘର ଛନ୍ଦ ଲଭ ଲେଖୁପୀ ସ୍ବରେଣି ବର୍ଣ୍ଣର ପଥିକ, ସ୍ବରେଣି ମାର୍ଗରେ ଏକ୍ଷ ସରସ ସରସୀର ସଦା ସନ୍ନିକଟ ବର୍ତ୍ତୀ କୃପା ବାରି ବିନ୍ଦୁ ଲାଭରେ କାଏ ମହତ ମନା ହୁଅନ୍ତି ।

ଓଁ

**ଜ୍ଞାନୀ ଜ୍ଞାନ ନେତ୍ରେ ସରସୀ ଦେଖେ!**
**ଯହିଁ ରାଜ ହଂସ କ୍ରୀଡ଼ା ବିବେକେ ॥**

× + +

ଜ୍ଞାନୀ—ଜ୍ଞାନ ଯୋଗରେ ଯାହାର ଆଶ୍ରୟ ।
ଜ୍ଞାନନେତ୍ର—ଦିବ୍ୟଚକ୍ଷୁ ଲାଭରେ ।
ସରସୀ—ଆନନ୍ଦ ରସ ଜଳାଶୟ ।
ଦେଖେ—ଦର୍ଶନ କରେ ।
ଯହିଁ—ଯେଉଁଠାରେ ।
ରାଜହଂସ—ସତ୍ ଚିତ୍ ଆନନ୍ଦ ଘନ (ପୁରୁଷୋତ୍ତମ)
କ୍ରୀଡ଼ା—ରମଣ କରେ ।
ବିବେକେ—ବିବେକ ରୂପ ଧାରଣ ପୂର୍ବକ । ଜ୍ଞାନ ନେତ୍ରେ, ଏ ସରସୀ ବିବେକରେ ଥିବାର ଜଣାପଡ଼େ ।

ଜ୍ଞାନୀ, ଜ୍ଞାନ ଯୋଗର ଆଶ୍ରୟରେ ଏ ଆନନ୍ଦ ରସ ଭର ଜଳାଶୟକୁ ଦର୍ଶନ କରେ । ସରସ କ୍ରୀଡ଼ାଯୁକ୍ତ ସରସୀ ମଣ୍ଡନ ରାଜହଂସ ଜ୍ଞାନୀର ବିବେକାରୂଢ଼ ହୁଏ ।

ଓଁ

**ଜିଜ୍ଞାସାର ଆଶା ଯେ ମନେ ବନ୍ଧ**
**ବୁଦ୍ଧି କେନ୍ଦ୍ରେ ତାର ପକ୍ଷୀ ଲୋଟଇ ॥**

\+ \+ \+

ଜିଜ୍ଞାସାର—ଜାଣିବାର(ତତ୍ତ୍ୱ ଜାଣିବାର) ଆଶା, ଆକାଂକ୍ଷା ।

ଯେ ମନେ ବନ୍ଧ—ଯେ ମନରେ ବନ୍ଧନ କରେ ।

ବୁଦ୍ଧି କେନ୍ଦ୍ରେ—ବୁଦ୍ଧି କେନ୍ଦ୍ରରେ

ତାର—ତାହାର

ପକ୍ଷୀ ଲୋଟଇ—ରାଜହଂସ କ୍ରୀଡ଼ା କରେ ।

ଅର୍ଥାତ୍ ଜିଜ୍ଞାସୁର ବୁଦ୍ଧି କେନ୍ଦ୍ରରେ ପରମ ତତ୍ତ୍ୱର ବିଚ୍ଛୁରଣା ହୁଏ ।

ଯେଉଁ ପୁଣ୍ୟାତ୍ମା ତତ୍ତ୍ୱ ଲାଭର ଆଶାରେ(କୃପା ବାରିଧନ ଲଭ) ଜିଜ୍ଞାସାର ମାଧ୍ୟମରେ ପ୍ରାପ୍ତ କରିବାକୁ ପୋଷଣ କରେ, ସଦାନନ୍ଦ ଘନ ମଙ୍ଗଳମୟ ସେ ସୁକୃତ କର୍ମର ବୁଦ୍ଧି କେନ୍ଦ୍ରାରୂଢ଼ ହୁଏ ।

ଓଁ

**ଅର୍ଥୀ ଅର୍ଥକରେ ମନ ଗମ୍ଭୀରେ**
**ତତ୍ତ୍ୱ ଚନ୍ତାମଣି ପୁଷ୍ଟ ଲ୍ନ ଷ୍ଟିରେ ॥**

× × +

ଅର୍ଥୀ—ତତ୍ତ୍ୱାର୍ଥୀ ( ପରମ ତତ୍ତ୍ୱକୁ ଅର୍ଥ କରି ସିଦ୍ଧାନ୍ତରେ ଉପନୀତ ହେବା )
ଅର୍ଥ କରେ—ବିଶ୍ଳେଷଣାର ସାହାଯ୍ୟରେ ।
ମନ ଗମ୍ଭୀର—ଗମ୍ଭୀର ମନର ମାଧ୍ୟମରେ ।
ତତ୍ତ୍ୱ ଚନ୍ତାମଣି—ଆଶ୍ଚର୍ଯ୍ୟର ଆଶ୍ଚର୍ଯ୍ୟ । ମହତ ସତ୍ତ୍ୱ
ପୁଷ୍ଟ ଲ୍ନଷ୍ଟିରେ—ଯେତେଦୂର ମନର ଗତି ଯାଇ ପାରେ । ପ୍ରକାରାନ୍ତରେ ଅର୍ଥୀର ତତ୍ତ୍ୱାର୍ଥ ଚନ୍ତା ମନୋମୟ କୋଷରେ ହିଁ ହୁଏ ।

ତତ୍ତ୍ୱାର୍ଥୀ ଏ ପରମ ତତ୍ତ୍ୱ ଚନ୍ତାମଣିକୁ ଗମ୍ଭୀର ମନର ମାଧ୍ୟମରେ ବିଶ୍ଳେଷଣ କରେ । ଅର୍ଥାତ୍ ଅର୍ଥୀର ତତ୍ତ୍ୱାର୍ଥ ଚନ୍ତା ମନୋମୟ କୋଷରେ ହିଁ ହୁଏ ।

ଓଁ

ଆରତ ଭଜଇ ରଙ୍ଗା ଚରଣ
ଦୃଢ଼ ମୂଢ଼ ମତ୍ତ ଦେଇ ପରାଣ ।

\+ \+ \+ ”

ଆରତ—ଆର୍ତ୍ତ, ଯାର କେବଳ ମାତ୍ର ଭାବ (ପରିତ୍ରାଣ ପରିପୂର୍ଣ)

ଭଜଇ—ଆରାଧନା କରେ ।

ରଙ୍ଗାଚରଣ—ସୁରଙ୍ଗ ଚରଣ ଦ୍ୱୟକୁ । ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ଯା'ର ପଦ୍ମ ଗଳିତ ମକରନ୍ଦ ବାରି ଧାର । ମନବିଶ୍ୱ ଯାର ଦୃଷ୍ଟି । ଏକ ଲିପିରେ ଯାର ସତତ ଚିନ୍ତା ।

ମୂଢ଼ ମତ୍ତ—ଜ୍ଞାନ ଓ କର୍ମ ଯେ ବୁଝେନାହିଁ । ପରମ ଚୈତନ୍ୟକୁ ଯେ ସୀମିତ ଗଣ୍ଡି ମଧ୍ୟରେ ଦେଖିବାକୁ ଚାଏ ।

ଦେଇ ପରାଣ—ପ୍ରାଣର ପତନରେ ଯାର ଭୟ ନଥାଏ । ଅର୍ଥାତ୍ ଭକ୍ତ ରୂପ ଜାତ ହୋଇ ଯାର ପ୍ରାଣ ଜୀବନ ଧାର ସଙ୍ଗରେ ସମ୍ବନ୍ଧ ନଥାଏ ।

ଆର୍ତ୍ତର ଆରାଧନା କେବଳ ମାତ୍ର ଯୋଗୀ ଯୋଗାନନ୍ଦ ସୁରଙ୍ଗ ଚରଣ ଦ୍ୱୟ । ଯାହାର ଜ୍ଞାନ ଓ କର୍ମ କିଛି ନାହିଁ କେବଳ ଚେତନାରେ ଚେତନାର ବିକାଶ ପ୍ରାଣରେ ଶ୍ରୀ ପ୍ରାଣାରାମର ଦର୍ଶନ ଅର୍ଥାତ୍ ଯେ ଚୈତନ୍ୟର ଅତି ନିକଟବର୍ତ୍ତୀ ସର୍ବୋପରି ଯେ ପରମ ଚୈତନ୍ୟରେ ଓତଃପ୍ରୋତଃ ସେହି ଦୃଢ଼ ମୂଢ଼ମତ୍ତ ପରମ ଭକ୍ତ ।

॥୧୫୩॥

ଓଁ

**ସରସୀର ବାରି ନିର୍ମଳ ଅତି**
**ପିଇଥିଲେ ଥରେ ଦୁର୍ଲଭ ଗତି ॥**

\+ \+ \+

ସରସୀର—ଆନନ୍ଦ ରସରେ ଭରା ।
ସରସୀ – ପୁଷ୍କରଣୀର ଜଳ ।
ନିର୍ମଳ ଅତି—ଯେ ଅତି ସୁନିର୍ମଳ ଅଟେ ।
ପିଇଥିଲେ ଥରେ—ଥରେ ପାନ କରିଥିଲେ ।
ଦୁର୍ଲଭ ଗତି—ଯେଉଁ ଗତିକୁ କେହି ଲାଭ କରି ପାରେନା । ସର୍ବୋପରି, ଏହି ସରସୀର ରସ ପାନ—ସାଯୁଜ୍ୟ, ସାଲୋକ୍ୟ ତଥା ସାରୂପ୍ୟ ଗତି ପ୍ରଦାନ କରେ । ଅବସ୍ଥାର ସବୁ ପରିବର୍ତ୍ତନ ଆଣେ ।

ଏହି ଆନନ୍ଦ ରସରେ ଭରା ସରସୀର ଜଳ ଅତି ସୁ ନିର୍ମଳ ଅଟେ । ଯେଉଁ ଦୁର୍ଲଭଜନ୍ମା ଯୋଗାନନ୍ଦ ପ୍ରେମୀ ଥରେ ଏ ସରସୀର ଜଳ ପାନ କରିଥାଏ; ତାର ହିଁ ମହତ୍ ଗତି ଲାଭ ହୁଏ ।

ଓଁ

**ସ୍ୱର ବର୍ଣ୍ଣେ ବିପ୍ର ଶେଷ ସୁନ୍ଦର**
**ଶେଷ ଦେବ କୃପା ଲଭେ ସେ ବର ॥**

\+ \+ \+

ସ୍ୱରବର୍ଣ୍ଣେ—ଏହି ଉତ୍ତମ ସ୍ୱର ବର୍ଣ୍ଣରେ ।
ବିପ୍ର—ବ୍ରହ୍ମାନନ୍ଦ ଲାଭପ୍ରୟାସୀ
ଶେଷ ସୁନ୍ଦର—ଆର୍ଦ୍ର ହିଁ ସୁନ୍ଦର ଚିଦାନନ୍ଦର
ଅତି ପ୍ରିୟ ଓ ଅତି ନିକଟବର୍ତ୍ତୀ ।
ଶେଷ ଦେବ କୃପା—ଶେଷଦେବ, ଯେ ସର୍ବ
ଶେଷ, ଅବଶେଷ, ଅର୍ଥାତ୍ ଅନନ୍ତ ।
କୃପାଲଭେ—ଦୟାର ପାତ୍ର ହୁଏ ।
ସେ ବର—ସେହି ଶ୍ରେଷ୍ଠ ।

ଏହି ଉତ୍ତମ ସ୍ୱର ବର୍ଣ୍ଣରେ ଶେଷ ଅର୍ଥାତ୍ ଅନ୍ତିମ ବର୍ଣ୍ଣ ହିଁ ପରମ ସୁନ୍ଦର । ସେହି ଚିଦାନନ୍ଦ ରସଗ୍ରାହୀ । ତାହାର ଉପରେ ର କାର ରୂପ ଶେଷଦେବଙ୍କ କୃପା ପରମ କଲ୍ୟାଣ ନିତ୍ୟ ବର୍ଷମାନ ଥାଏ ।

ଓଁ

**ଭକତ ତାହାର ଚକା ବଇଠି**
**ତେଣୁ ଚକା ଆଖି ନଅଇ ଲୁଚି ॥**

\+ \+ \+

ଭକତ ତାହାର — ତାହାଙ୍କ ଭକ୍ତ ସିଏ ।
ଚକା ବଇଠିଲ — ଅଖଣ୍ଡ ମଣ୍ଡଳାକାର ।
ତେଣୁ — ସେହ୍ନ ଦେଖିବୁଁ ଊର୍ଦ୍ଧ୍ୱରେ ।
ଚକାଆଖି — ସର୍ବନସ୍ତନା (ସମୁଦାୟ ଜଗତ
କେନ୍ଦ୍ର ଯାର କୃପାକଟାକ୍ଷରେ ଉଦ୍‌ଭବ ।
ନଅଇ ଲୁଚି — କୃପାଦୃଷ୍ଟି ଆକର୍ଷଣ କରେ ।

ଭକ୍ତ ତାହାର ଅଖଣ୍ଡ ମଣ୍ଡଳାକାର (ପରିପୂର୍ଣ୍ଣ ପ୍ରେମରସପୂର୍ଣ୍ଣ) ଏଣୁ ଚରାଚର ସ୍ୱାମୀ ଅଖଣ୍ଡ ମଣ୍ଡଳାକାର (ସଚ୍ଚିଦାନନ୍ଦ ଘନଙ୍କ) ମଣ୍ଡଳାକାର ଦୃଷ୍ଟିକୁ ସେହ୍ନ ସଦସା ଓଢଶ ହୃଦୟାକାଶକୁ ଆକର୍ଷଣ କରି ନେଇଯାଏ ॥

ଓଁ

ଗୁରୁଘର ପାଠ ଗୃହ ଚଉତା
ଛ ଅକ୍ଷରରେ ଲାଗିଛି ଚଢ଼ା ॥

× × +

ବ୍ରହ୍ମଜ୍ଞାନ—ଗୁରୁଙ୍କର ପାଠ । ସତ୍ୟର ନିର୍ଣ୍ଣୟ ।
ଘର ଚଉତା—ଘରେଟି ମହାବିଦ୍ୟାର ଅଧୀନ
ସୀତା-ରାମ—ଛ ଅକ୍ଷରରେ = ଛଅଟି ଅକ୍ଷରରେ
ବର୍ଣ୍ଣରେ ମହାମନ୍ତ୍ର ଓଁ ଶ୍ରୀଂ ରାମାୟ ନମଃ ।
ଲାଗିଛି ଚଢ଼ା— ଅନନ୍ତ ବିଶ୍ୱରେ ଯେ ଅ ଉ ମ
ନାଦରେ ବନ୍ଧିତ (ପୂର୍ଣ୍ଣାନନ୍ଦ ଘନ) ୧ ଋକ୍,
୨ ଯଜୁ, ୩ ସାମ, ୪ ଅଥର୍ବ ।
୧ ସୀ—ସୋମ, ୨ ତା = ଅଗ୍ନି ୩, ରା = ପରମ
ପ୍ରକୃତି ୪ ମ = ପରମ ପୁରୁଷ ।
ସୀତା—ଶୁଭ୍ର, ତାପ = ପ୍ରାଣ, ସାକାର = ସ =
ରଙ୍ଗ ନିରାକାର, = ରଙ୍ଗଶୂନ୍ୟ ।

ପରମ ସତ୍ୟର ନିର୍ଣ୍ଣୟ ଘରେଟି ମହାବିଦ୍ୟାର ଅଧୀନ
ଗୁରୁକୃପାରେ ହିଁ ଏହାର ଅଧିକାର ମିଳେ । ଏହା
ଛଅ ଗୋଟି ବର୍ଣ୍ଣାକ୍ଷରର ପରମ ଯୋଗ । ପକ୍ଷାନ୍ତରେ
ଏହା ମନ୍ତ୍ର ରୂପ ପୂର୍ଣ୍ଣ ଜ୍ୟୋତିର୍ମୟ ।

ଓଁ

ନଅଁ ଗୁଣେ ବପ୍ର ପଇତା ଧର
ତିନ ଗୁଣେ ନାଏ ହୃଦୟେ ଭର ॥

\+ \+ \+

ନଅଁ ଗୁଣେ-ନଟି ଗୁଣରେ । ୧ ସତ୍ୟ, ୨ଅହିଂସା
୩ ବ୍ରହ୍ମଚର୍ଯ୍ୟ, ୪ ଦୟା, ୫ କ୍ଷମା, ୬ ଶୌଚ
୭ ସଗୁଣ ୮ ନିର୍ଗୁଣ, ୯ ଆସ୍ତିକ୍ୟ ।

ବପ୍ର—ବ୍ରହ୍ମ ସାକ୍ଷାତକାର ପ୍ରୟାସୀ ଉପବୀତ
ଧାରଣ ପୂର୍ବକ ।

ପଇତା ଧରି—ତିନ ଗୁଣ ନାଏ = ତିନୋଟି ଗୁଣର
ଏକତ୍ରୀ କରଣ ।

ହୃଦୟେ ଭରି—ଗୁଣଶୂନ୍ୟ ହୃଦୟ କର ।

ସଗୁଣ—ସାକାରର ଉପାସନା ।

ନିର୍ଗୁଣ—ନିରାକାରର ଉପାସନା ।

କାଳକୁ ସ୍ୱୀକାର ପୂର୍ବକ ।

କାଳକୁ ଅସ୍ୱୀକାର ପୂର୍ବକ ।

ବ୍ରହ୍ମ ସାକ୍ଷାତ୍କାର ପ୍ରୟାସୀ ନଅଟି ସୂତ୍ରର ମାଧ୍ୟମରେ
ପରମ ଗୁଣତ୍ରୟକୁ ଚିଦାକାଶରେ ଲୟ ରଖି ବିଶୁଦ୍ଧ
ଚିତ୍ତ ଅନ୍ତଃକରଣ ପୂର୍ବକ ପରମ ତପ ତତ୍ତ୍ୱନିଷ୍ଠ
ଆତ୍ମାକୁ ଗତି କରେ ।

ଓଁ

**ଏକ ସୂତ୍ରେ ଦେଖେ ଅପୂର୍ବ କଣ୍ଠି**
**ଯହିଁ ରାଜ ହଂସ ବାନ୍ଧିଛି ଛଣ୍ଡି ।**

\+ \+ \+

ଏକ ସୂତ୍ରେ—ଏକ ସୂତ୍ରରେ (ଅନନ୍ୟ ଚିତ୍ତ ଶାନ୍ତାରେ)
ଦେଖେ—ଦର୍ଶନ କରେ ।
ଅପୂର୍ବ କଣ୍ଠି—ଅପରୂପ ଗ୍ରନ୍ଥି ।
ଯହିଁ—ଯେଉଁଠାରେ ।
ରାଜହଂସ—ପରମ ହଂସ । (ଚିତ୍ତ ନିରଞ୍ଜନ)
ବାନ୍ଧିଛି—ବନ୍ଧନ କରିଅଛି
ଛଣ୍ଡି—ଗଳା ।

ଅନନ୍ୟ ଚିତ୍ତ ଶାନ୍ତାର ମାଧ୍ୟମରେ ନିରୀକ୍ଷଣ କର । ସରସ ସରସୀରେ, ସତତ କ୍ରୀଡ଼ାଯୁକ୍ତ ଅପରୂପ ଲାବଣ୍ୟଭରା ମରାଳରାଜ, ଏକ ମୃଣାଳ ସୂତ୍ରରେ ଏକ ଅପୂର୍ବ ଗ୍ରନ୍ଥି ନିର୍ମାଣ ପୂର୍ବକ ସ୍ୱ ଗଳାରେ ଦୋଳାୟମାନ ରଖିଅଛି । "ଚିତ୍ତଗ୍ରନ୍ଥି" ।

ଓଁ

କି ସୁନ୍ଦର ଦିଶେ ମରାଳରାଜ
ତିନି ମଣ୍ଡଳରେ ନିତ୍ୟ ବିରାଜ ॥

+ × +

କି ସୁନ୍ଦର ଦିଶେ—ଅତ୍ୟନ୍ତ ମନୋରମ ଦେଖାଯାଏ ॥

ମରାଳ ରାଜ—ରାଜ ହଂସ (ମର୍ଗଧାରୀ ବିନ୍ଦୁ)

ତିନୋଟି ମଣ୍ଡଳରେ—ତିନୋଟି ଜାଜ୍ୱଲ୍ୟମାନ ମଣ୍ଡଳ ମଧ୍ୟରେ ।

ନିତ୍ୟ—ସଦା ସର୍ବଦା ( ଯେ ନିତ୍ୟ—ସନାତନ ସ୍ୱରୂପ)

ବିରାଜ—ବିରାଜମାନ ।

ତିନୋଟି ଜାଜ୍ୱଲ୍ୟ ମାନ (ପ୍ରଭାମୟ) ମଣ୍ଡଳ ମଧ୍ୟରେ ଏହି ଅତ୍ୟନ୍ତ ଶୋଭାୟମାନ ରାଜହଂସ (ନିସ୍ୱଧାର ବିନ୍ଦୁ) ନିତ୍ୟ ବିରାଜମାନ କରେ ।

ଓଁ

ପ୍ରଥମ ମଣ୍ଡଳ ସ୍ଫଟିକ ମଣି
ରାଗ ପଦ୍ମ ରାଗେ ତାର ମଣ୍ଡଣି ॥

+ + +

ପ୍ରଥମ ମଣ୍ଡଳ = ପ୍ରଥମ ପ୍ରଭାମୟ ମଣ୍ଡଳ ।
ସ୍ଫଟିକ ମଣି =(ମଣି ବିଶେଷ) ପରମ ଶୁଭ୍ରତାରେ ଆଧାର ଭୂତ ।
ରାଗ ପଦ୍ମ ରାଗେ—(ମଣି ବିଶେଷ)ପଦ୍ମରାଗ ମଣି ରାଗରେ । (ସୁନ୍ଦର କମନୀୟ ଅରୁଣ ବର୍ଣ୍ଣରେ)
ତାର ମଣ୍ଡଣି—ମଣ୍ଡିତ ।

ଏହି ପ୍ରଥମ ପ୍ରଭାମୟ ମଣ୍ଡଳ ସ୍ଫଟିକ ମଣି ଯୁକ୍ତ ପରମ ଶୁଭ୍ରତାରେ ଶୋଭାୟମାନ । ଏହା ଅତି କମନୀୟ ଅରୁଣ ରାଗ ରଞ୍ଜିତ ପଦ୍ମରାଗ ମଣି ରାଗରେ ମଣ୍ଡିତ ହୋଇଅଛି ।

ଓଁ

ପ୍ରବାଳ ରକ୍ତିମା ଦ୍ୱିତ ମଣ୍ଡଳ
ସ୍ୱର୍ଣ୍ଣ ରାଗ ରାଗେ ଦଶେ ଉଜ୍ଜ୍ୱଳ ॥

+ × ×

ପ୍ରବାଳ—ବଦ୍ରୁମ, ପୋହଳା
ରକ୍ତିମା—ଗାଢ ରକ୍ତବର୍ଣ୍ଣ
ଦ୍ୱିଷ୍ଟ ମଣ୍ଡଳ—ଦ୍ୱିଘୟୁ ମଣ୍ଡଳ
ସ୍ୱର୍ଣ୍ଣ ରାଗ—ସୁବର୍ଣ୍ଣ ରଂଗ ( ମଣି ବଶେଷ )
କନିପୂର ପୁଷ୍ପ ବର୍ଣ୍ଣ ।
ରାଗେ—ରଙ୍ଗରେ ରଞ୍ଜିତ
ଦଶେ ଉଜ୍ଜ୍ୱଳ—ଉଜ୍ଜ୍ୱଳ ଦେଖାଯାଏ

ଦ୍ୱିଘୟୁ ଦ୍ରୁମମୟ ମଣ୍ଡଳ ପ୍ରବାଳ ରାଗ ରକ୍ତିମାରେ ଅତ୍ୟନ୍ତ ମନୋରମ ଅଟେ । ପୁନଃ ତାହା ସ୍ୱ-ବର୍ଣ୍ଣ ରାଗ ମଣ୍ଡିତ ଅତ୍ୟନ୍ତ ଜାଜ୍ୱଲ୍ୟମାନ ଦେଖା-ଯାଉଅଛି ।

ଓଁ

ଇନ୍ଦ୍ର ନୀଳ ରାଗ ମଣ୍ଡଳ ତନ
ବାଳାର୍କବନ୍ଧିତ ବିଦ୍ୟୁତ ବେଣୀ ।

+ × +

ଇନ୍ଦ୍ର ନୀଳ ରାଗେ—ଇନ୍ଦ୍ର ନୀଳ ରାଗ (ମଣି ବିଶେଷ) ମୟୂର କଣ୍ଠ ବର୍ଣ୍ଣ ।
ମଣ୍ଡଳ ତନ—ଭୂଷଣ ମଣ୍ଡଳ
ବାଳାର୍କ—ବାଳ ଅର୍କ ଅରୁଣ ଉଦୟ ବର୍ଣ୍ଣ
ବନ୍ଧିତ—ତ୍ରଭମୟ
ବିଦ୍ୟୁତ—ସୌଦାମିନୀ,ବିଜୁଳି
ବେଣୀ—ଲହରୀମାନ (ଲହର ସଦୃଶ)

ବାଳାର୍କରେ ପ୍ରତିବନ୍ଧିତ ସୌଦାମିନୀ ରେଖା ତୁଲ୍ୟ ଏବଂ ଇନ୍ଦ୍ର ନୀଳ ରାଗ (ମୟୂର କଣ୍ଠ ବର୍ଣ୍ଣ) ଭୂଷଣ ମଣ୍ଡଳ ମଙ୍ଗଳବଚନର ପରମ ଶୋଭାକୁ ବିସ୍ତାର କରୁଅଛି ।

।୧୭୪।

ଓଁ

ଚଣ୍ଡ ମୁଣ୍ଡ ହଂସ ବିଚିତ୍ର ରୀତ
ସ୍ଥିର ଶବ୍ଦ ବ୍ରହ୍ମେ ବ୍ରହ୍ମାଣ୍ଡ ପତି ॥

+ + +

ଚଣ୍ଡ ମୁଣ୍ଡ—ଯେ ପରମ ବିଚିତ୍ର ଶିର ଯୁକ୍ତ । ଯାହାଙ୍କୁ କେହି ଜାଣି ପାରନ୍ତି ନାହିଁ ।

ହଂସ—ଅନବରତ ଯେ ଜାଗ୍ରତ । ଯେ ପୂର୍ଣ୍ଣ ଚୈତନ୍ୟ ମୟ ।

ବିଚିତ୍ର ରୀତି—ଯାହାଙ୍କୁ ଜାଣିବା ପାଇଁ ଜନ୍ମ ଜନ୍ମାନ୍ତରର କଠିନ ତପସ୍ୟା କ୍ରିୟାଶୀଳ ହୋଇ ପାରେନା !

ସ୍ଥିର—ଯେ ଅଚଳାୟମାନ । ପରମ ସନାତନ ସତ୍ତ୍ୱ ।

ଶବ୍ଦ ବ୍ରହ୍ମେ—ଯେ ନାଦାତ୍ମିକା ଅର୍ଥାତ୍ ଯାହାର ଶରୀର ଶବ୍ଦ ବ୍ରହ୍ମ ଓଁକାର ହିଁ ଅଟେ ।

ବ୍ରହ୍ମାଣ୍ଡ ପତି—ଯେ ଅଖିଳ ବ୍ରହ୍ମାଣ୍ଡ ସ୍ୱାମୀ ଅଟେ ।

ଯେ ପରମ ବିଚିତ୍ର ଶିର ଯୁକ୍ତ । ଯାହାଙ୍କୁ କେହି ଜାଣି ପାରେନା । ଯେ ପୂର୍ଣ୍ଣ ଚୈତନ୍ୟ ମୟ । ଯେ ଅଚଳାୟମାନ ପରମ ସନାତନ ସତ୍ତ୍ୱ । ଯେ ନାଦାତ୍ମିକା ଅର୍ଥାତ୍ ଯାହାର ଶରୀର ଶବ୍ଦ ବ୍ରହ୍ମ ଓଁକାର ହିଁ ଅଟେ । ସେ ହିଁ ଏହି ବିଚିତ୍ର ଚଣ୍ଡ ମୁଣ୍ଡ ହଂସ ଅଖିଳ ବ୍ରହ୍ମାଣ୍ଡ ସ୍ୱାମୀ ଅଟେ ।

ଓଁ

ପ୍ରତିବିମ୍ବ ପଡ଼େ ନିର୍ମଳ ସରେ
ଯହିଁ ଊର୍ମିରେଖା ସଦା ସଂଚରେ ।।

\+ \+ \+

ପ୍ରତି ବିମ୍ବ—ଛାୟା, ଫଳକ
ପଡ଼େ—ପତିତ ହୁଏ
ନିର୍ମଳ ସରେ—ସୁ ନିର୍ମଳ ସରୋବରରେ
ଯହିଁ—ଯେଉଁଠାରେ
ଊର୍ମି ରେଖା – ବୀଚି ମାଳା
ସଦା—ସବୁବେଳେ, ଅହରହ
ସଂଚରେ—ସଂଚରଣ କରେ "ଖେଳେ"

ଏହି ପରମ ଶାନ୍ତ ସୁନିର୍ମଳ ତରଙ୍ଗାୟିତ ସରସ ସରସୀରେ ଅପୂର୍ବ ଆପଦଶିର ଯୁକ୍ତ ହଂସ ମରାଳ ରାଜର ପ୍ରତିବିମ୍ବ ସୁବର୍ଣ୍ଣ ରେଖା ପ୍ରାୟ ବର୍ତ୍ତିତ ହେଉଅଛି ।

ଓଁ

## ହଂସ ରାମ ରୂପୀ ବ୍ରହ୍ମ ଫଳକ
## କୈବଲ୍ୟ ମଣ୍ଡଳ ନିତ୍ୟ ଗୋଲକ ॥

+ + +

ହଂସ—ଏକ ତତ୍ତ୍ୱ ନିରଞ୍ଜନ

ରାମ ରୂପୀ—ମର୍ଯ୍ୟାଦା ପୁରୁଷୋତ୍ତମ ରୂପେ ଯେ ଯେ ବିରାଜମାନ ।

ବ୍ରହ୍ମ ଫଳକ—ପ୍ରତିଫଳିତ ପ୍ରତିବିମ୍ବ

କୈବଲ୍ୟ—କେବଳ ମାତ୍ର ଐକ୍ୟ ଯେ ଏକ ତତ୍ତ୍ୱାଧୀନ । ଯେ ଚିନ୍ମୟ, ଯେ ପୂର୍ଣ୍ଣ ପରମାନନ୍ଦ ରସ ।

ମଣ୍ଡଳ—ଯେ ମଣ୍ଡିତ କରେ

ନିତ୍ୟ—ଅଜ ସନାତନ

ଗୋଲକ—ଜ୍ଞାନାଲୋକ । ଏକମାତ୍ର ତତ୍ତ୍ୱ ବଳୟ

ହଂସରାଜ ତତ୍ତ୍ୱ ନିରଞ୍ଜନ ଅଟନ୍ତି । ପୁନଃ ହଂସ ପ୍ରତିବିମ୍ବ ରାମ ରୂପୀ ମର୍ଯ୍ୟାଦା ପୁରୁଷୋତ୍ତମ ଯେ କି ପରମ କୈବଲ୍ୟ ମଣ୍ଡଳ କରି ଏକ ତତ୍ତ୍ୱାଧୀନ, ଚିନ୍ମୟ, ପରମାନନ୍ଦ ରସ ସନାତନ ଅଖଣ୍ଡ ମଣ୍ଡଳାକାର ପରଂବ୍ରହ୍ମ ଅଟନ୍ତି ।

ଓଁ

ବିଦେହ ନନ୍ଦିନୀ ଦଣ୍ଡିର ଛାୟା
ତପ୍ତ ସ୍ୱର୍ଣ୍ଣ ବର୍ଣ୍ଣା ସେ ଯୋଗମାୟା

\+ + ×

ବିଦେହ—ଶରୀର ଶୂନ୍ୟ
ନନ୍ଦିନୀ—ମହାଶୂନ୍ୟରୁ ଯାର ଜନ୍ମ । ଅର୍ଥାତ୍
ନିଜେ ନିଜ କୃତ ଯାର ଉଦ୍ଭବ ।
ବିଦେହ ନନ୍ଦିନୀ—ବୈଦେହୀ ଜାନକୀ,ସୀତା
ଦଣ୍ଡିର ଛାୟା—ଦଣ୍ଡିର ପ୍ରତିବିମ୍ବ ।
ତପ୍ତ— ପ୍ରଦୀପ୍ତ, ଜାଜ୍ୱଲ୍ୟମାନ
ସ୍ୱର୍ଣ୍ଣ ବର୍ଣ୍ଣା – ସୁବର୍ଣ୍ଣ ବର୍ଣ୍ଣ , ସୁବର୍ଣ୍ଣ ବରଣା
ସେ—ପରମା ଜଗତ୍ ଜନନୀ
ଯୋଗମାୟା—ପରମ ଯୋଗ ଠାରେ ଆଶ୍ରିତ
ପକ୍ଷାନ୍ତରେ—ମହତ ଯାହା ଠାରେ ଅବୃତ ରହେ

ଏ ପରମ ଦୀପ ଦଣ୍ଡିର ଛାୟା (ପ୍ରତିବିମ୍ବ) ବିଦେହ ରାଜସୁତା (ଶରୀର ଶୂନ୍ୟା) ବୈଦେହୀ ତପ୍ତ ସ୍ୱର୍ଣ୍ଣ ବର୍ଣ୍ଣା (ସୁ ବର୍ଣ୍ଣ ବର୍ଣ୍ଣା) ଜଗତ୍ ଜନନୀ ପରମ ଯୋଗମାୟା (ଯୋଗାଶ୍ରିତ) ଅଟନ୍ତି ।

ଓଁ

ସରସୀର ଶୁଭ୍ର ସଲିଲ ରାଶି
ଅନୁଜ ଲକ୍ଷ୍ମଣ ଏ ବିଶ୍ୱ ଗ୍ରାସୀ ॥

\+ \+ \+

ସରସୀର—ଜଳାଶୟର (ଆନନ୍ଦ ରସ ପୂର୍ଣ୍ଣ
ପୁଷ୍କରଣୀର)
ଶୁଭ୍ର—ସ୍ୱଚ୍ଛ (ସ୍ଫଟିକ ବର୍ଣ୍ଣ)
ସଲିଳ ରାଶି—ଜଳ ରାଶି (ଆନନ୍ଦ ରସ ଭଣ୍ଡାର)
ଅନୁଜ—("ଅ" ରୁ ଯ ଦ୍ୱାର ଉଦ୍ଭବ)
ଲକ୍ଷ୍ମଣ—ଶେଷ ଦେବ
ଆନନ୍ଦ ଘନ—ଶ୍ରୀ ରାମଚନ୍ଦ୍ରଙ୍କ ଭ୍ରାତା
ଏ ବିଶ୍ୱଗ୍ରାସୀ—ଯେ ସମୁଦ୍ରୟ ଜଗତକୁ ଗ୍ରାସ
କରିଅଛି ।

ଏ ଆନନ୍ଦ ରସ ପୂର୍ଣ୍ଣ ପୁଷ୍କରଣୀର ସ୍ୱଚ୍ଛ ଜଳରାଶି
ବିଶ୍ୱଗ୍ରାସୀ ପରମ ଶେଷ ଦେବ । ଅନୁଜ, ଷଣ୍ଡ ଜନ୍ମ
ର କାର ଋଷ ରୂପ ପବିତ୍ର ପାବନ ପାଦ ସେବୀ
ଲକ୍ଷ୍ମଣ ହିଁ ଅଟନ୍ତି ।

ଓଁ

**ପ୍ରତିବିମ୍ବ ରଚେ ଓଲଟ ଖେଳ**
**ଦଣ୍ଡି ଚୂଳେ ହଂସ ଛଳେ ସଲିଳ ॥**

\+ \+ \+

ପ୍ରତିବିମ୍ବ ରଚେ—ପ୍ରତିବିମ୍ବ ରଚନା କରେ
ଓଲଟ ଖେଳ—ଯାହା ପ୍ରସ୍ଫୁଟମାନ ତାର ବିପରୀତ
ଦଣ୍ଡି ଚୂଳେ—ଦଣ୍ଡି ଚୂଡ଼ାରେ, ଦଣ୍ଡିର ଅଗ୍ର ଭାଗରେ ।
ହଂସ—ନିରଞ୍ଜନ (ଯେ ନିରାଧାର ଅଟେ)
ଛଳେ—ଛଳ ଦେଶରେ
ସଲିଳ—ଜଳ ବୃଷ୍ଟି

ଦଣ୍ଡି ଓ ଦଣ୍ଡି ଚୂଡ଼ାଯୁକ୍ତ ରାଜ ହଂସର ପ [illegible]
ପ୍ରତିବିମ୍ବ ଊର୍ମିରେଖା ଯୁକ୍ତ ସରସ ଧ [illegible]
ବିପରୀତ ଲୀଳା ରଚନା କରୁଅଛି ।
ଅଧୋଭାଗ ଉଭୟ ଏକାକାର (ଏକ [illegible]

ଓଁ

**ଯହିଁ ନୀର ଛୁଏଁ କନକ ଦଣ୍ଡି**
**ତାହା ବିଦ୍ୟା ବିଦ୍ୟା ବିଭେଦ ଚଣ୍ଡି ॥**

\+ \+ \+

ଯହିଁ ନୀର ଛୁଏଁ—ଯେଉଁଠାରେ ଜଳ ସ୍ପର୍ଶ କରେ
କନକ ଦଣ୍ଡି—ସୁବର୍ଣ୍ଣ ଦଣ୍ଡି ( ଯେ ଉତ୍ତମ ବର୍ଣ୍ଣରେ ନିର୍ମିତ)
ତାହା ବିଦ୍ୟା ବିଦ୍ୟା—ତାହା ବିଦ୍ୟା ଓ ଅବିଦ୍ୟା ଉଭୟ ଅଟେ । ଉପର ଭାଗ ବିଦ୍ୟା ଓ ତଳ ଭାଗ ଅବିଦ୍ୟା ଉପର ଭାଗ ଜ୍ଞାନାଲୋକ ଓ ନିମ୍ନ ଭାଗ ତାମସୀ ବୃତ୍ତି ।
ବିଭେଦ—ବିଭାଜକ
ଚଣ୍ଡି = ଯୋଗମାୟା ଯୋଗ ଆବୃତ କାରିଣୀ, ଚଣ୍ଡି ପ୍ରଦାନ କାରିଣୀ । ଯାହାଠାରୁ କୃପା ରୂପୀ ପ୍ରସାଦ ଲାଭ ହୁଏ ।

ସୁବର୍ଣ୍ଣ ଦଣ୍ଡକୁ ଯେଉଁଠାରେ ସରସୀର ନୀର ସ୍ପର୍ଶ କରେ ଅର୍ଥାତ୍ ଯେଉଁ ରେଖା କନକ ଦଣ୍ଡିର ବିଭାଜକ ଅଟେ । ତାହା ବିଭେଦ ଚଣ୍ଡି ନାମା ପରମ ଯୋଗ ମାୟାର ସ୍ଥାନ । ବିଦ୍ୟା ଓ ଅବିଦ୍ୟାର ଯୋଗ ରେଖା ଯୋଗ ମାୟାକୃତ ସଦା ଆବୃତ ଅଟେ ।

ଓଁ

## ଆତ୍ମମାୟା ଯୋଗେ ଆତ୍ମାଭିରାମ
## ଅଭିରାମ ମୂର୍ତ୍ତି ମଙ୍ଗଳ ଧାମ ॥

\+ \+ \+

ଆତ୍ମମାୟା—ଯାହାର ନିଜର ମାୟା ଶକ୍ତି ଅଛି
ଯୋଗେ—ଯୋଗରେ ଅର୍ଥାତ୍ ଯେ ମାୟା ସଙ୍ଗରେ ଯୋଗ ହୋଇ ପାରେ ।
ଆତ୍ମାଭିରାମ—ଆତ୍ମ ଅଭିରାମ ଅଟେ । ନିଜର ମାୟା ବନ୍ଧରେ ତନ ନିଜକୁ ଅନିର୍ବଚନୀୟ କରି ସୃଷ୍ଟି କରିପାରେ ।
ଅଭିରାମ ମୂର୍ତ୍ତି—ନୟନାଭିରାମ ମୂର୍ତ୍ତି । ପରମ ଆହ୍ଲାଦମୟ ଶାନ୍ତାକାର, କାନ୍ତାକାର ମୂର୍ତ୍ତି
ମଙ୍ଗଳ ଧାମ—ମଙ୍ଗଳ ମୟ, ମଙ୍ଗଳାକୃତି ଅଟେ

ଆତ୍ମା ଅଭିରାମ ସେ ନିଜ ମାୟା ବନ୍ଧ ବଳରେ ନିଜକୁ ଅନିର୍ବଚନୀୟ କରି ସୃଷ୍ଟି କରିପାରେ । ସେ ନୟନାଭିରାମ ମୂର୍ତ୍ତି ପରମ ଆହ୍ଲାଦମୟ ଶାନ୍ତାକାର, କାନ୍ତାକାର ମଙ୍ଗଳାକୃତି ଅଟେ ।

ଓଁ

ଅପର୍‌ର ନାହିଁ ତିଳେ ଶକତି
ଭଜି ପାରିବ ସେ ଚରମ ଗତି ॥

+ + +

ଅପର୍‌ର—ଅପର୍ ପ୍ରକୃତି (ବହିର୍ଜଗତ୍)
ନାହିଁ—ସେ ସକ୍ଷମ ନୁହେଁ
ଶକତି—ବଳ ତଥା ତେଜ
ଭଜି ପାରିବ—ଆରାଧନା କରି ପାରିବ । ସନ୍ନିକଟବର୍ତ୍ତୀ ହେବା ।
ସେ ଚରମ ଗତି—ସେ (ଅପର) ବିଶେଷ ଶେଷ ଗତି । ତତ୍ତ୍ୱାର୍ଥ ଲଭ କରିବା ଶକ୍ତି ।

ଅପର୍ ପ୍ରକୃତିର (ବହିର୍ଜଗତର) ସେ ଚରମ ଗତିକୁ (ପରମ ତତ୍ତ୍ୱର ସନ୍ନିକଟବର୍ତ୍ତୀ ହେବା) ପ୍ରାପ୍ତ ହେବାର ତିଳେ ହେଲେ ଶକ୍ତି ନାହିଁ । ଅର୍ଥାତ୍ କଦାପି କ୍ଷମ ନୁହେଁ ।

ଓଁ

ପର ଉତ୍କେଳୟ ସୀମା ଭିତରେ
ତାଙ୍କୁ ଚିହ୍ନିବାକୁ କେ ଅଛି ଥରେ ।।

\+ \+ \+

ପର — ଚେତନ ମୟୀ ପ୍ରକୃତି
ଉତ୍କେଳୟ — ନିଶ୍ଚିନ୍ତ ହୋଇଯାଏ
ସୀମା ଭିତରେ — ସ୍ୱ ବଳୟ ମଧ୍ୟରେ
ତାଙ୍କୁ ଚିହ୍ନିବାକୁ — ତାର ପରିଚୟ ପାଇବାକୁ
(ତତ୍ତ୍ୱାର୍ଥ ଲାଭ କରିବାକୁ)
କେ ଅଛି ଥରେ — ଚେତନାମୟୀ ପ୍ରକୃତି
ଯେଉଁଠାରେ ପରାହତ ଅନ୍ୟର କଥା ଧରିବାର
ଯୋଗ୍ୟ ନୁହେଁ ।

ପର, ପ୍ରକୃତି ଏବଂ ଚେତନ ମୟୀ ପ୍ରକୃତିର ସ୍ୱ ବଳୟ ମଧ୍ୟରେ ନିଶ୍ଚିନ୍ତ ହୋଇଯାଏ । ପରମ ତତ୍ତ୍ୱାର୍ଥ ଲାଭ ନିମିତ୍ତ ସେ କଦାପି କ୍ଷମ ନୁହେଁ ।

ଓଁ

ନୁହଇ ବିଗ୍ରହ ନୁହେଁ ନିଗ୍ରହ
ସବୁଠାରେ ସେହି ମଙ୍ଗଳ ଗ୍ରହ ।

\+ \+ \+

ନୁହଇ ବିଗ୍ରହ—ପରମ ତତ୍ତ୍ୱ ବିଗ୍ରହ ସାପେକ୍ଷ ନୁହେଁ ।

ନୁହେ ନିଗ୍ରହ—ପରମ ତତ୍ତ୍ୱ ନିଗ୍ରହ ସାପେକ୍ଷ୍ୟ ମଧ୍ୟ ନୁହେଁ । ମନ ଓ ବଚନରେ ଯେ ଧରି ହୁଏ ନା ।

ସବୁଠାରେ—ସର୍ବତ୍ର

ସେହି—ସେ "ବ୍ରହ୍ମ"

ମଙ୍ଗଳ ମୟ—ମଙ୍ଗଳାକୃତି

ଏହି ପରମ ତତ୍ତ୍ୱ କୌଣସି ଏକ ବିଶିଷ୍ଟ ବିଗ୍ରହ ସାପେକ୍ଷ ନୁହେଁ ତଦୁପରି ନିଗ୍ରହ ମଧ୍ୟ ନୁହେଁ । କେବଳ ତତ୍ତ୍ୱମୟ । ମନ ଓ ବଚନରେ ଯେ ଧରା ହୁଏ ନା ସର୍ବତ୍ର ସେହି ମଙ୍ଗଳ ମୟ ବ୍ରହ୍ମ ରୂପ ଅଟେ ।

ଓଁ

ଭବନେତ୍ରେ ଯାହା ଦିଶେ ସୁନ୍ଦର
କାଳ ବଶେ ତାର ବିନାଶ ସ୍ଥିର ॥

+ × ×

ଭବନେତ୍ରେ—ସଂସାରିକ ଦୃଷ୍ଟିରେ
ଯାହା ଦିଶେ ସୁନ୍ଦର—ଯାହା ସୁନ୍ଦର ଦେଖାଯାଏ
ଅର୍ଥାତ୍ ଯେ ମୂର୍ତ୍ତିମାନ
କାଳ ବଶେ—କାଳର କବଳରେ
ତାର—ତାହାର
ବିନାଶ—ଧ୍ୱଂସ
ସ୍ଥିର—ସୁନିଶ୍ଚିତ ଅଟେ ।

ସାଂସାରିକ ଦୃଷ୍ଟି କୋଣରେ ଯାହା ମୂର୍ତ୍ତିମାନ ଦେଖାଯାଏ କାଳର କବଳରେ ତାହା ନିଶ୍ଚିହ୍ନ ହୋଇଯାଏ । ସର୍ବଗ୍ରାସୀ କାଳ କାହାକୁ ତାର ସୀମା ଉଲ୍ଲଂଘନ କରିବାକୁ ଦିଏ ନା ।

ଓଁ

## ସେ କେବେ ନୁହଇଁ ପ୍ରାକୃତ ଶୋଭା
## ଅନ୍ଧ ନୟନରେ ଅଞ୍ଜନ ଲେଖା ॥

+ + +

ସେ କେବେ ନୁହଇଁ —ଏହି ସାଂସାରିକ ଦୃଷ୍ଟି
କୋଣ କଦାପି
ପ୍ରାକୃତ ଶୋଭା—ପ୍ରାକୃତ ସୁନ୍ଦର ନୁହେଁ
ଅନ୍ଧର ନୟନରେ—ଅନ୍ଧର ଚକ୍ଷୁରେ ଦେବା
ଅଞ୍ଜନ ଲେଖା—ଅଞ୍ଜନ ମାତ୍ର । ବିଷୟ ଯାହାର
ସହଚର (ତାମସୀ ବୃତ୍ତି ଯାହାର ମନାକାଶକୁ
ବେଷ୍ଟନ କରିଅଛି । ତାହାର ଆତ୍ମାରେ ଅଞ୍ଜନ
ନିଜ ଗୁଣରେ ସୁନ୍ଦର ହେଲେ ମଧ୍ୟ ନିଷ୍
ପ୍ରୟୋଜନ ଅଟେ ।

ଏହି ସଂସାରିକ ଦୃଷ୍ଟି କୋଣରେ ଯାହା ଚିତ୍ତାକର୍ଷକ ବାସ୍ତବ ବୋଲି ମନେ ହୁଏ, ତାହା ବାସ୍ତବ ସୁନ୍ଦର ନୁହେଁ । ଅନ୍ଧର ନୟନରେ ଅଞ୍ଜନ ଲେଖାଯାଇ ହେଲେ ମଧ୍ୟ ତାହା ନିରର୍ଥକ ଅଟେ ।

ଓଁ

**ମନ ସାରଥିର ଯୋଗ୍ୟ ତୁରଙ୍ଗ**
**ସେମାନେ କି କେବେ ଦେଖିବେ ରଙ୍ଗ ।**

+ × +

ମନ ସାରଥିର—ଏ ଶରୀର ରଥର ମନ ସାରଥି ସଂଜ୍ଞକ ଅଟେ
ଯୋଗ୍ୟ ତୁରଙ୍ଗ—ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚ ଜ୍ଞାନେନ୍ଦ୍ରିୟ (ଦଶ ଇନ୍ଦ୍ରିୟ) ଏ ଶରୀର ରଥର ଯୋଗ୍ୟ ଅଶ୍ୱ ସ୍ୱରୂପ
ସେମାନେ କି କେବେ—ଅର୍ଥାତ୍ ଏ ଇନ୍ଦ୍ରିୟ ସମୂହ କେବେ ହେଲେ ହେ
ଦେଖିବେ ରଙ୍ଗ—ପ୍ରକୃତ ରଙ୍ଗ(ଚିନ୍ମୟ ଚିନ୍ତାମଣି) ଦେଖିବାକୁ ସକ୍ଷମ ନୁହନ୍ତି

ଏ ଶରୀର ରଥରେ ମନ ସାରଥି ସଂଜ୍ଞକ ଅଟେ । ଇନ୍ଦ୍ରିୟ ନିଚୟ ତାର ଯୋଗ୍ୟ ତୁରଙ୍ଗମ ତୁଲ୍ୟ । ଏହି ଉକ୍ତ ଇନ୍ଦ୍ରିୟ ସମୂହ କେବେହେଲେହେ ମହତ ନିତ୍ତ୍ୱ ଦର୍ଶନ କରିବାକୁ କଦାପି ସକ୍ଷମ ନୁହନ୍ତି ।

ଓଁ

ମନ ଇନ୍ଦ୍ର ଜାଲ ମାୟା ନନ୍ଦନ
ମହା ତତ୍ତ୍ୱେ ନୁହେଁ ତା ଅଭିଯାନ ॥

\+ + +

ମନ ଇନ୍ଦ୍ର ଜାଲ—ମନ ଇନ୍ଦ୍ର ଜାଲ ସ୍ୱରୂପ
ମାୟା ନନ୍ଦନ—ମାୟା ପୁତ୍ର ଅଟେ
ମହା ତତ୍ତ୍ୱେ—ମହତ ତତ୍ତ୍ୱରେ
ନୁହେଁ ତା ଅଭିଯାନ—ତାର ଜୟଯାତ୍ରା କଦାପି
ସମ୍ଭବ ନୁହେଁ ।

ମନ ମାୟା ପୁତ୍ର ଇନ୍ଦ୍ର ଜାଲ ସ୍ୱରୂପ ଅଟେ । ମହତ ତତ୍ତ୍ୱରେ ତାର ଅଭିଯାନ କଦାପି ସମ୍ଭବ ନୁହେଁ । (ମନୋମୟ କୋଷ ପ୍ରାଣମୟ କୋଷରେ ହିଁ ଲୟ ଯାଏ ।

ଓଁ

**ବୁଦ୍ଧି ଅନୁସାର ଜଗତ କନ୍ଧ**
**ଧୀ, ବନ୍ଧନୀ ଡେଇଁ ପାରେ ସେ ନାହିଁ ॥**

\+ × +

ବୁଦ୍ଧି—ଈଶ୍ବର ଯନ୍ତ୍ର

ଅନୁସାର—ଅଗ୍ରଗଣ୍ୟ । ପ୍ରଥମରେ ଯେ ଗଣନା ହୁଏ ।

ଜଗତ କନ୍ଧ—ଜଗତ ଯାହା କନ୍ଧୁଥାଏ ।

ଧୀ, ବନ୍ଧନୀ—ଜ୍ଞାନ ବନ୍ଧନୀ

ଡେଇଁ ପାରେ ସେ ନାହିଁ—ସେ ଡେଇଁ ପାରେନା ଅର୍ଥାତ୍ ଏକ ସୀମିତ ବଳୟ ମଧ୍ୟରେ ବୁଦ୍ଧିର କର୍ତ୍ତୃତ୍ବ ପ୍ରକାଶିତ ଥାଏ ।

ବୁଦ୍ଧି ଏକ ଈଶ୍ବର ଯନ୍ତ୍ର । ଜଗତରେ ଏହାର ସ୍ଥାନ ଅଗ୍ରଗଣ୍ୟ । ଏହାର ବଳରେ ଜାଗତିକ ବସ୍ତୁ ସମୂହ ସୁଷ୍ଠୁ ରୂପେ ସମାହିତ ହୁଏ । ମାତ୍ର ଦେଖ ଏହି ଅଗ୍ରଗଣ୍ୟ ବୁଦ୍ଧି ତାର ନିଜର ଧୀ ବନ୍ଧନୀ (ଧୀ-ରଚା) ବନ୍ଧନୀ ଉଲଙ୍ଘନ କରିପାରେ ନାହିଁ । ମହତ୍ ତତ୍ତ୍ବାଭିମୁଖୀ ହେବା ଏହା ପକ୍ଷରେ ଏକାନ୍ତ ଅସମ୍ଭବ

ଓଁ

**ମନ ବୁଦ୍ଧି ଯୋଗେ ମୁଁ କାର ଜାତ**
**ମମତା ତାହାର ପ୍ରିୟ ସଙ୍ଗାତ ॥**

\+ \+ ×

ମନ ବୁଦ୍ଧି ଯୋଗେ—ମନ ଓ ବୁଦ୍ଧିର ଯୋଗରେ (ସୂତ୍ରରେ)
ମୁଁ କାର ଜାତ—ମହାଭୂତ ଅହଂକାର ର ଜନ୍ମ ହୁଏ
ମମତା — ଆସକ୍ତି
ତାହାର ପ୍ରିୟ ସଂଗାତ—ତାହାର ପ୍ରିୟ ସହଚର ଅବିଦ୍ୟାର ପ୍ରାବଲ୍ୟରେ ଅହଂତା ଓ ଓ ମମତାର ଜନ୍ମ ଲାଭ ହୁଏ ।

ମନ ଓ ବୁଦ୍ଧିର ନିଗୂଢ଼ ଯୋଗରେ ମହାଭୂତ ଅହଂକାର ଜନ୍ମ ହୁଏ । ମମତା ଏହି ଦୁର୍ଜୟ ଅହଂକାରର ପ୍ରିୟ ସହଚର; ବୁଦ୍ଧିର ବିପର୍ଯ୍ୟୟରୁ ଏହାର ଜନ୍ମ । ସର୍ବୋପରି ଅବିଦ୍ୟାର ପ୍ରାବଲ୍ୟରେ ଅହଂତା ଓ ମମତାର ଜନ୍ମ ହୁଏ ।

ଓଁ

**ଖେଳ ଘର ଭାଙ୍କ ଅମା ରଜନୀ**
**ସେ କାହିଁ ଜାଣିବେ ଅମୂଲ୍ୟ ମଣି**

\+ \+ \+

ଖେଳ ଘର—କ୍ରୀଡ଼ା ସ୍ଥଳୀ, ପୀଠ,
ତାଙ୍କ—ଅହଂତା ଓ ମମତାର
ଅମା ରଜନୀ—ଅମା ବାସ୍ୟାର ଘନ ଅନ୍ଧକାର (ଅବିଦ୍ୟା ଦର୍ଶନ)
ସେ କାହୁଁ . ଜାଣିବେ—ସେମାନେ କପରି ଜାଣିବାକୁ ସକ୍ଷମ ହେବେ
ଅମୂଲ୍ୟ ମଣି—ଚିତ୍ତ ଚିନ୍ତାମଣି ମହତ ମଣି ପରମ ବନ୍ଧୁ

ଏହି ଅବିଦ୍ୟା ଜାତ ଅହଂତା ଓ ମମତାର କ୍ରୀଡ଼ା ସ୍ଥଳୀ ଅମାବାସ୍ୟାର ଘନ ଅନ୍ଧକାର, ଏହି ଅମୂଲ୍ୟ—ମଣିର ସନ୍ଧାନ କପରି ଲାଭ କରିବେ ? ଅର୍ଥାତ୍ ଏହି ଅହଂତା ଓ ମମତା (ଆଶକ୍ତି ଯୁକ୍ତ) ଚିତ୍ତର ଅତି ଦୂରରେ ।

ଓଁ

ପଶ୍ନର ବିବେକିନେ ଦେବ କି କହି
ହିତାହିତ ସବୁ କଥା ରଖଇ

+ + +

ପଶ୍ନର ବିବେକେ—ବିବେକକୁ ପ୍ରଶ୍ନ କରିଯାଉ
ଦେବକି କହି—ସେ ଉତ୍ତର କରି ପାରିବ କି ?
ହିତାହିତ—ହିତ ଓ ଅହିତ ସମସ୍ତ କଥା (ସବୁକଥା)
ରଖଇ—ସେ ଉଚିତ ରୂପେ ଜାଣେ

ତେଣୁ ଋଷି ବିବେକକୁ ପ୍ରଶ୍ନ କରିଯାଉ କାରଣ ସେ ହିତ ଓ ଅହିତ ସମସ୍ତ କଥା ବିଚାର କରିବାକୁ (ଧର୍ମ) ଧୀର ଧର୍ମ ଧୂରନ୍ଧର ଅଟେ ।

ଓଁ

## ପ୍ରାଣେ ଲୀନ ଯାଏ ବିବେକ ଚୂଡ଼ା
## ନ ଜାଣଇ ପ୍ରାଣ ଉଦ୍‌ଭବ କ୍ରୀଡ଼ା

\+ \+ \+

ପ୍ରାଣେ ଲୀନ ଯାଏ—ସେ ପ୍ରାଣରେ ନିଶ୍ଚିହ୍ନ ହୋଇଯାଏ

ବିବେକ ଚୂଡ଼ା—ବିବେକର ଚୂଡ଼ା ବିଚାରିତର ନିଷ୍ପତ୍ତି

ନ ଜାଣଇ – ସେ କଦାପି ଜ୍ଞାତ ନୁହେଁ

ପ୍ରାଣ ଉଦ୍‌ଭବ କ୍ରୀଡ଼ା—ପ୍ରାଣର ଉଦଗମନ କରଣ ହୁଏ ଅର୍ଥାତ୍ ପ୍ରାଣାଙ୍କୁରର ଉତ୍ପତ୍ତି ସମ୍ବନ୍ଧରେ

ବିବେକ ଚୂଡ଼ାମଣି—ସମ୍ପୂର୍ଣ୍ଣ ଅନଭିଜ୍ଞ ଅଟେ

ବିବେକ ଚୂଡ଼ାମଣି ପ୍ରାଣମୟ କୋଷରେ ନିଶ୍ଚିହ୍ନ ହୋଇଯାଏ । ପ୍ରାଣାଙ୍କୁର ଉତ୍ପତ୍ତି ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ଅନଭିଜ୍ଞ ଅଟେ । ପରମ ତତ୍ତ୍ୱର ଉପଲବ୍ଧି ଏହା ପକ୍ଷରେ ମଧ୍ୟ ସମ୍ଭବ ନୁହେଁ ।

ଓଁ

ପ୍ରାଣ ପାଞ୍ଚ ବାୟୁ ମହା ଗଗନେ
ଖୋଜି ବୁଲୁଥାନ୍ତି ହଜିଲା ଧନେ ॥

+ + +

ପ୍ରାଣ ପାଞ୍ଚ ବାୟୁ—ପ୍ରାଣ ପାଞ୍ଚବାୟୁରେ ନିର୍ମିତ
ଅଟେ

୧ ପ୍ରାଣ, ୨ ଅପାନ, ୩ ଉଦାନ, ୪ ବ୍ୟାନ
୫ ସମାନ

ମହାଗଗନେ—ମହା ଅନ୍ତରୀକ୍ଷରେ

ଖୋଜି ବୁଲୁ ଥାନ୍ତି—ଅନ୍ୱେଷଣ କରୁଥାନ୍ତି
(ଲୋଡ଼ୁ ଥାନ୍ତି)

ହଜିଲା ଧନେ—ମହତ୍ୱ ତତ୍ତ୍ୱ କଣ ?

ପ୍ରାଣ ପଞ୍ଚବାୟୁରେ ନିର୍ମିତ ମହାଅନ୍ତରୀକ୍ଷରେ ନିଜର ସତ୍ତ୍ୱରେ ନିଜେ ସନ୍ଧାନ ହୋଇ ନିଜର ଏକଶୀ କରଣ ନିମିତ୍ତ ସ୍ଥାନର ଅନ୍ୱେଷଣ କରୁଥାନ୍ତି ଅର୍ଥାତ୍ ପ୍ରାଣ ଏକ ଚଳାୟମାନ ସୂକ୍ଷ୍ମ ସତ୍ତ୍ୱ, ତତ୍ତ୍ୱୋପଲବ୍‌ଧି ଏହା ପକ୍ଷରେ ମଧ୍ୟ ସମ୍ଭବ ନୁହେଁ ।

ଓଁ

**ଜଣାଗଲା ଏବେ ଜଗ ଛାଉଣୀ**
**କେହୁ ନ ଲଭିଲେ ଅମୂଲ୍ୟ ମଣି ॥**

\+ \+ \+

ଜଣାଗଲା ଏବେ—ବର୍ତ୍ତମାନ ପୂର୍ଣ୍ଣ ରୂପେ ବଦତ ହେବାକୁ ହେଲା

ଜଗ ଛାଉଣୀ—ଏ ଜଗତ ରଚନାର ଉପାଦାନ କେଉଁମାନେ

କେହୁ ନ ଲଭିଲେ—କେହୁ ହେଲେ ହେଁ ଲାଭ କଲେ ନାହିଁ ।

ଅମୂଲ୍ୟ ମଣି—ଅବ୍ୟକ୍ତ ନିଧି ତତ୍ତ୍ୱାଧାର ପରମାନନ୍ଦ ପୁରୁଷୋତ୍ତମ ଶ୍ରୀ ରାମ

ଏ ଜଗତ ରଚନାର ଉପାଦାନ କେଉଁମାନେ ତାହା ନିଶ୍ଚିନ୍ତ ରୂପେ ନିର୍ଣ୍ଣୟ ହୋଇଗଲା । କେହୁ ହେଲେ ହେଁ ଏ ଅମୂଲ୍ୟ ରତ୍ନର(ସଚ୍ଚିଦାନନ୍ଦ ଘନର) ସନ୍ଧାନ ଲାଭ କଲେ ନାହିଁ । ଅର୍ଥାତ୍ ମହତ୍ ତତ୍ତ୍ୱୋପଲବ୍ଧି କାହାରି ହିଁ ହେଲା ନାହିଁ । ପୂର୍ଣ୍ଣ ଜଗତ୍ ଯୋଗ ମାୟାର ପରମ ମାୟାଚ୍ଛାଦିତ ଅଟେ ।

ଓଁ

କହ ଆତ୍ମାରାମ ରମଇ ନାହିଁ
ବନ୍ଧ ପଦ ଅଛୁ ସ୍ଥିତି ଅଛଇ ।

\+ \+ \+

କହ ଆତ୍ମାରାମ—କହ—ଲୀଳାମୟ
ରମଇ କାହିଁ—କେଉଁଠାରେ ରମଣ କରେ
ପଦ ବନ୍ଧ ଅଛି—ପଦ ବନ୍ଧ ଅଛି ବୋଲି
ସ୍ୱୀକାର କରାଯାଏ
ସ୍ଥିତି ଅଛଇ—ତାହାହେଲେ ସ୍ଥିତି ନଷ୍ଟପ୍ର
ଅଛି । ସ୍ଥିତିର ବକାଣ ବନ୍ଧ ପୁନଃ ସ୍ଥିତିରେ
ବନ୍ଧ ଅବଧାରିତ ।

କହ ଆତ୍ମାରାମ କେଉଁଠାରେ ରମଣ କରେ ? ପଦ ବନ୍ଧ ଅଛି ବୋଲି ସ୍ୱୀକାର କରଯାଏ ତାହାହେଲେ ତାର ସ୍ଥିତି ଅବଶ୍ୟ ନିଶ୍ଚିତ ରୂପେ ବିଦ୍ୟମାନ । ପଦ ବନ୍ଧ ଓ ସ୍ଥିତିର ଧାରଣା ତତ୍ତ୍ୱ ରୂପ ତେବେ ତତ୍ତ୍ୱ ଆଧାର ବନ୍ଧ ନାଦାତ୍ମିକା ଅଟେ । ଅତଏବ ସ୍ଥିତିର ବକାଣ ବନ୍ଧ ଓ ବନ୍ଧ ସ୍ଥିତିରେ ହିଁ ଅବଧାରିତ ଏକ ପ୍ରଦୀପ୍ତ ମଧ୍ୟରୁ ତତ୍ତ୍ୱ ସବଙ୍କ ଚମତ୍କାର ରମ

ଓଁ

# ସ୍ଥିତ ନାଦ ବିନ୍ଦୁ ସଚ୍ଚିଦାନନ୍ଦ
# ସ୍ଥିତ ରାଗ, ବିନ୍ଦୁ ସେ ରାମାନନ୍ଦ

\+ \+ \+

ସ୍ଥିତ ନାଦ—ସ୍ଥିତ ନାଦ (ଅର୍ଥାତ୍ ଅର୍ଦ୍ଧ ମାତ୍ରା ଜଗତ୍ ଜନନୀ ପରମ୍ବା) ଅଟେ ।

ବିନ୍ଦୁ ସଚ୍ଚିଦାନନ୍ଦ—ବିନ୍ଦୁ, ସତ୍, ଚିତ୍, ଆନନ୍ଦ ଘନ (ପରମ ପୁରୁଷ) ପୂର୍ଣ୍ଣାନନ୍ଦ ବ୍ରହ୍ମ ଅଟେ ।

ସ୍ଥିତ ରାମ—ସ୍ଥିତ ରାମ ଅର୍ଥାତ୍ ସମୁଦାୟ ଜଗତର ରଚନାର ଏକ ମାତ୍ର ଆଧାର ; ଜଗତ୍ ଜନନୀ ରାମ ହୃଦୟ ବଲ୍ଲଭା ଜାନକୀ ଅଟନ୍ତି ।

ବିନ୍ଦୁ ରାମାନନ୍ଦ—ବିନ୍ଦୁ ରାମ ଆନନ୍ଦ (ପରମ ସେ ଅଟନ୍ତି)

ବିନ୍ଦୁ ନାଦରେ ଶ୍ରୀ ରମଣ କରେ—ବିନ୍ଦୁ ନାଦାତ୍ମିକା ଅଟେ ।

ସ୍ଥିତ ନାଦ ରୂପା ଅର୍ଦ୍ଧମାତ୍ରା ଓ ବିନ୍ଦୁ ସତ୍ ଚିତ୍ ଆନନ୍ଦ ଘନ ପରଂବ୍ରହ୍ମ । ସ୍ଥିତ ରାମ ଯୁକ୍ତ ପରମାତ୍ମା ଜଗତ ଜନନୀ ଜାନକୀ ବନ୍ଧୁ ପୂର୍ଣ୍ଣାନନ୍ଦ ଶ୍ରୀ ରାମଚନ୍ଦ୍ର ଅଟନ୍ତି ।

ଓଁ

ଜ୍ଞାନ ଗ୍ରନ୍ଥେ ଏନ୍ତ୍ୱ ମହତ୍ତ ସତ୍ତ୍ୱ
ଜ୍ଞାନ ଗ୍ରନ୍ଥେ ଏନ୍ତ୍ୱ ମହତ୍ତ ତତ୍ତ୍ୱ ॥

\+ + +

ଜ୍ଞନ ଗ୍ରନ୍ଥେ ଏନ୍ତ୍ୱ—ଜ୍ଞାନ ଗ୍ରନ୍ଥରେ ଅର୍ଥାତ୍ ପବିତ୍ର ବେଦରେ॥
ଏନ୍ତ୍ୱ ମହତ ତନ୍ତ୍ୱ—ଏହାଙ୍କ ମହତ୍ ତତ୍ତ୍ୱ ଅଟେ ।
ଜ୍ଞନ ଗ୍ରନ୍ଥେ—ଜ୍ଞାନ ଗ୍ରନ୍ଥନରେ ।
ଏନ୍ତ୍ୱ ମହତ୍ ତତ୍ତ୍ୱ—ଏହାଙ୍କ ମହତ ତତ୍ତ୍ୱ ଅଟେ ।

ପବିତ୍ର ବେଦରେ ଏହାଙ୍କୁ ଓଁକାର ରୂପ ମହତ୍ ସତ୍ତ୍ୱ ପୁଣି ଜ୍ଞାନାଲୋକରେ ଏହାଙ୍କୁ ଏକମାତ୍ର ମହତ୍ ତତ୍ତ୍ୱ ସତ୍ୟ, ଶିବ ସୁନ୍ଦର ପରମାତ୍ମା ॥

ଓଁ

ଋକ୍ ଯଜୁ, ସାମ ଅଥର୍ବ ଗୀତା
ବେଦାନ୍ତ ଉପନିଷଦ ଯଥା ପ୍ରଣୀତା ॥

+ + +

ଋକ୍ ଯଜୁ ସାମ—ଜ୍ଞାନ ଗ୍ରନ୍ଥ ଚତୁଷ୍ଟୟ ଓ ।
ଅଥର୍ବ ଗୀତା—ବେଦାନ୍ତର ସାରତତ୍ତ୍ୱ ।
ବେଦାନ୍ତ ଉପାନ୍ତ—ବ୍ରହ୍ମ ନିର୍ଣ୍ଣୟର ଚରମ ସୂତ୍ର ଓ ଉପନିଷଦର ଗାଥାବଳୀ ।
ଯଥା ପ୍ରଣୀତା—ଯାହା କିଛି ପ୍ରଣୟନ ହୋଇ ଅଛି ।

ଜ୍ଞାନ ଗ୍ରନ୍ଥ ଚତୁଷ୍ଟୟ । ବେଦାନ୍ତ ସାର ତତ୍ତ୍ୱ, ବ୍ରହ୍ମ ନିର୍ଣ୍ଣୟର ଚରମ ସୂତ୍ର ତଥା ଉପନିଷଦ ଗାଥାବଳୀ ଯାହା କିଛି ପ୍ରଣୟନ ହୋଇ ଅଛି ତାହା ଏଣ୍ଡ୍ର ମହତ୍ ତତ୍ତ୍ୱର ସାକ୍ଷାତ୍ ନିମିତ୍ତ ॥

ଓଁ

ମହତ୍ ତତ୍ତ୍ୱ ଲାଭ ପ୍ରୟାସ ମତ
ମାର୍ଗ ଦେଇଛନ୍ତି ବୁଧ ସନ୍ତତ ॥

\+ × ×

ମହ ତତ୍ତ୍ୱ ଲଭ—ମହତ୍ ତତ୍ତ୍ୱ ଲଭ ଅର୍ଥାତ୍ ବ୍ରହ୍ମ ନିର୍ଣ୍ଣୟରେ ।
ପ୍ରୟାସ ମତି—ଚେଷ୍ଟିତ ଥିଉ ।
ମାର୍ଗ ଦେଇଛନ୍ତି—ପଥ ପ୍ରଦର୍ଶନ କରିଅଛନ୍ତି ।
ବୁଧ ସନ୍ତତି—ପ୍ରାଚୀନ ଭାରତୀୟ ତତ୍ତ୍ୱ ସାକ୍ଷାତ୍କାରୀ ଋଷି ନିଚୟ । ଅର୍ଥାତ୍ ସୂତ୍ର କାର ମାନେ ।

ପ୍ରାଚୀନ ଭାରତୀୟ ତତ୍ତ୍ୱ ସାକ୍ଷାତ୍ କାର ଋଷି ନିଚୟ ଅର୍ଥାତ୍ ସୂତ୍ରକାର ମାନେ ଏହି ପରମ ମହତ୍ତ୍ୱ ଲଭ ନିମିତ୍ତ ବହୁ ପ୍ରକାର ମାର୍ଗର ପ୍ରଦର୍ଶନ କରି ଅଛନ୍ତି ॥

ଓଁ

**ମହ ତତ୍ତ୍ୱ ଲଭ ବଡ଼ ଜଟିଳ**
**ଏଥି ନାହିଁ କିଛି ବୁଦ୍ଧିର ବଳ ॥**

\+ \+ \+

ମହ ତତ୍ତ୍ୱ ଲଭ—ମହାପ୍ରାଣ ତତ୍ତ୍ୱକୁ ଲାଭ କରିବା ।

ବଡ଼ ଜଟିଳ—ଅତ୍ୟନ୍ତ କଠିନ କଷ୍ଟ ସାଧ୍ୟ ଅଟେ ।

ଏଥି ନାହିଁ କିଛି ବୁଦ୍ଧିର ବଳ—ଏହିଠାରେ କୌଣସି ପ୍ରକାର ବୁଦ୍ଧିର ବଳ ପ୍ରୟୋଗ ହୋଇ ପାରେ ନା । ସର୍ବୋପରି ତତ୍ତ୍ୱ ଲାଭରେ ବୁଦ୍ଧି ପରାନ୍‌ମୁଖ ଅଟେ ।

ଏହି ମହାପ୍ରାଣ ତତ୍ତ୍ୱକୁ ଲାଭ କରିବା ନିମିତ୍ତ ଯେଉଁ ଯେଉଁ ମାର୍ଗ ପ୍ରଦର୍ଶନ କରାଯାଇଅଛି ତାହା ଅତ୍ୟନ୍ତ କଠିନ । ପୁନଃ ଏହାର ପ୍ରାପ୍ତି ନିମିତ୍ତ ବୁଦ୍ଧିର ବଳ ମଧ୍ୟ ପ୍ରୟୋଗ କରାଯାଇ ପାରେ ନା ।

॥୧୯୨॥

ଓଁ

ଶମ୍ଭୁ କୃପା ବିନା ଅନନ୍ୟ ଗତି
ନାହିଁ ଭବେ ଦେବା କାର ଶକତି ॥

× × ×

ଶମ୍ଭୁ କୃପା ବିନା—ପରମ କଲ୍ୟାଣମୟ ଶିବଙ୍କ ଅପାର କରୁଣା ବ୍ୟତୀତ ।
ଅନନ୍ୟ ଗତି—ନ ଅନ୍ୟ ଗତି (ଦୁର୍ଲଭ ଗତି)
ନାହିଁ ଭବେ ଦେବା—ଏ ଭବ ସଂସାରରେ ଦେବାର ।
କାର ଶକତି—କାହାର ଶକ୍ତି ନାହିଁ ।

ପରମ କଲ୍ୟାଣମୟ ଶିବଙ୍କ ଅପାର କରୁଣା ବିନା ଏ ଅନନ୍ୟ ଗତିକୁ (ଦୁର୍ଲଭ ଗତିକୁ) ପ୍ରାପ୍ତ କରିବାର ଶକ୍ତି ଏ ଭବ ସଂସାରରେ କାହାର ନାହିଁ । ଅନନ୍ୟ ଶିବ ଚରଣାରବିନ୍ଦ ଆରାଧନା ଏକମାତ୍ର ଉପାୟ ॥

ଓଁ

**ଶମ୍ଭୁ କୃପା ବଳେ ସଦ୍‌ଗୁରୁ ଲାଭ**
**ସଦ୍‌ଗୁରୁ ଲଭିଲେ ଶୂନ୍ୟରେ ଠାବ ॥**

\+ × +

ଶମ୍ଭୁ କୃପାବଳେ—କରୁଣା କରୁଣାଳୟ ପରମ ପାବନ ଶମ୍ଭୁ (ଶିବ) କୃପା ବଳରେ ।

ସଦ୍‌ଗୁରୁ ଲାଭ—ଉଚିତ ପଥ ପ୍ରଦର୍ଶକ ଗୁରୁ ଅର୍ଥାତ୍ ଶିବ ରୂପି ଗୁରୁ (ଉପଦେଷ୍ଟା) ଲାଭ ହୋଇଥାଏ ।

ସଦ୍‌ଗୁରୁ ଲାଭ ହେଲେ—ଅର୍ଥାତ୍ ଜ୍ଞାନ ଦୃଷ୍ଟି ହେଲେ ।

ଶୂନ୍ୟରେ ଠାବ—ବିଷୟ ବାହିର ଶେଷ ହୁଏ ଅପୂର୍ବ ଜ୍ଞାନ ଲୋକରେ ମହତ୍ ତତ୍ତ୍ୱର ପ୍ରକାଶ ହୁଏ ।

ପରମ କରୁଣାକର ଶିବ କୃପା ବଳରେ ହିଁ ସଦ୍‌ଗୁରୁ (ଉଚିତ ଉପଦେଷ୍ଟା)ର ସନ୍ଧାନ ମିଳିଯାଏ । ସଦ୍‌ଗୁରୁ ଲାଭ ବଳରେ ହିଁ ମହାଶୂନ୍ୟର ପରିଚୟ ମିଳେ । ଅର୍ଥାତ୍ ତତ୍ତ୍ୱ ଚିନ୍ତାର ଯଥାର୍ଥ ସ୍ଥାନ ନିରୂପଣ ହୋଇଯାଏ ।

ଓଁ

**ଶୂନ୍ୟ ଠାବ ହେଲେ ମିଳଇ ନାଦ**
**ନାଦ ଲଭେ ତୁଟେ ଭବ ବିଷାଦ ॥**

\+ + +

ଶୂନ୍ୟ ଠାବ ହେଲେ—ପରମ ଶୂନ୍ୟର ଆଶ୍ରୟ ହେଲେ । (ମହାଅନ୍ତରୀକ୍ଷରେ ବିଚରଣ କଲେ) ମିଳଇ ନାଦ—ପରମ ନାଦର ଲାଭ ହୁଏ (ଏହାହିଁ ଯୋଗୀର ଲକ୍ଷ୍ୟ ବସ୍ତୁ)

ନାଦ ଲଭେ—ଓଁକାରର ଶ୍ରବଣ ହେଲା ମାତ୍ରେ ହିଁ ଦିବ୍ୟ ଚକ୍ଷୁର ଲାଭ ହୁଏ । ଦିବ୍ୟ ଗନ୍ଧରେ ଆତ୍ମାଦ୍ୱୟ ଭରପୁର ହୋଇ ଉଠେ ।

ବିନ୍ଦୁ ନାଦାତ୍ମିକା ପରମ ରହସ୍ୟ ଅହେତୁକ କୃପାରେ ପ୍ରକାଶିତ ହୋଇ ଉଠେ । ତୁଟେ ଭବ ବିଷାଦ—ଭବ ରଜନୀର ଗାଢ଼ ଅନ୍ଧକାରର ମଧ୍ୟରୁ ଅପୂର୍ବ ଜ୍ଞାନ ସୂର୍ଯ୍ୟର ଉଦୟ ସକଳ ବିଷାଦକୁ ଦୂର କରେ ।

ପରମ ଶୂନ୍ୟର ଆଶ୍ରୟ ହେଲେ (ଚିଦାକାଶର ଦର୍ଶନ ହେଲେ) ପରମ ନାଦ ଓଁକାରର ଶ୍ରବଣ ହୁଏ । ଏହି ପରମ ନାଦର ମାଧ୍ୟମରେ ବିଷୟ ରଜନୀର ଅନ୍ଧକାର ମଝିରୁ ଜ୍ଞାନ ରବିର ଉଦୟ ହୁଏ ଅର୍ଥାତ୍ ଭବ ବ୍ୟାଧିର ପରିସମାପ୍ତି ଘଟେ ।

ଓଁ

ଇଚ୍ଛା, ଜ୍ଞାନ କର୍ମ ତିନହେଁ ମିଶି
ମହା ନାଦେ ଯାନ୍ତି ସର୍‌ଗେ ପଶି ॥

\+ + ×

ଇଚ୍ଛା, ଜ୍ଞାନ, ଓ କର୍ମ—କର୍ମ ଇଚ୍ଛାରେ ପ୍ରବେଶ କରେ । ପୁନଃ ଇଚ୍ଛା ଜ୍ଞାନରେ ପ୍ରବେଶ କରେ । ବର୍ତ୍ତମାନ ଏକହିଁ ଜ୍ଞାନ (ଜ୍ଞାନରୂପ) ହଂସ ରୂପ ।

ମହାନାଦେ ଯାନ୍ତି—ମହାନାଦର ଅଭ୍ୟନ୍ତରକୁ । ସରଗେ ପଶି — ଅତି ଅନୁରାଗର ସହିତ ଗମନ କରେ । ସର୍ବୋପରି ଲୟ ଯାଏ । ବର୍ତ୍ତମାନ ପରମ ହଂସ ସାକ୍ଷାତ୍ ପରମାନନ୍ଦ ଭୂମିକାରେ ଉପନୀତ ହେଲା ।

ଚିଦାକାଶର ଲଭରେ ଇଚ୍ଛା; ଜ୍ଞାନ, ଓ କର୍ମ (ଶକ୍ତିତ୍ରୟ) ଏକତ୍ରିତ ହୋଇ ପରମନାଦର ମାଧ୍ୟମରେ ଚିତ୍ତାଭ୍ୟନ୍ତରକୁ ପ୍ରବେଶ କରନ୍ତି ଅର୍ଥାତ୍ ସର୍ବୋପରି ଲୟ ରହନ୍ତି । ଗୁଣତ୍ରୟ ଲୟରେ ହିଁ ଗୁଣାତୀତର ପରମ ପ୍ରକାଶ ହଂସ ସଚ୍ଚିଦାନନ୍ଦ ରୂପ ଉପଲବ୍‌ଧି ହୁଏ ।

ଓଁ

**ବାସନା ଛୁଟିଲେ ଛୁଟଇ ବାସ**
**ପ୍ରପଞ୍ଚ ପଞ୍ଚମ ଜଗ ନିବାସ ॥**

\+ + +

ବାସନା ଛୁଟିଲେ—କାମନାର ବିନାଶ ଦୁଃଖର ବିନାଶ । ବିଷୟ ବାସନା ଛୁଟିଗଲେ ।

ଛୁଟଇ ବାସ—ଭବ ବାସ, (ମସ୍ତକ, ନିବାସ ସ୍ଥାନ) ଛୁଟିଯାଏ ।

ପ୍ରପଞ୍ଚ—ମହା ପଞ୍ଚଭୂତରେ ନିର୍ମିତ ।

ପଞ୍ଚମ—ପଞ୍ଚ ତନ୍‌ମାତ୍ରାରେ ଯେ ଉପଲବ୍‌ଧି ହୁଏ ।

ଜଗ ନିବାସ—ଏହି ବିଚିତ୍ର ଜଗତର ମହା ପ୍ରଳୟ ଘଟେ ।

ଅର୍ଥାତ୍ ବୁଦ୍ଧିର—ମୁକ୍ତାବସ୍ଥା ଆସିଗଲା ।

ବାସନା କ୍ଷୟ ଗଲେ ଅର୍ଥାତ୍ ବିଷୟ ମାନଙ୍କ ସର୍ବତୋଭାବରେ ବିନାଶ ଘଟିଲେ, ମହାଭୂତରେ ନିର୍ମିତ ତନ୍‌ମାତ୍ରା ଯୁକ୍ତ ଏ ସତତ ଚଳାୟମାନ ଜଗତର ମହା ପ୍ରଳୟ ଘଟେ । ଅର୍ଥାତ୍ ବଦ୍ଧାବସ୍ଥା ଅତିକ୍ରମଣ ପୂର୍ବକ ମୁକ୍ତାବସ୍ଥାରେ ଅବସ୍ଥାନ କରେ ।

ଓଁ

**ଜଗନ୍ନି ବାସରେ ହୁଅଇ ଦେଖା**
**କଇବଲ୍ୟ ଭୋଗ ଯନ୍ତ୍ରଁରେ ଲେଖା ॥**

× + +

ଜଗନ୍ନି ବାସରେ—ଜଗତ ଈଶ (ସ୍ରଷ୍ଟା) ପରମେଷ୍ଠି । ଜଗଦୀଶଙ୍କ
ହୁଅଇ ଦେଖା—ବାସ୍ତବ ଦର୍ଶନ ହୁଏ ।
କଇବଲ୍ୟ ଭୋଗ—କୈବଲ୍ୟର ସାର ଆଧାର
(ଅହଂ ବ୍ରହ୍ମାସ୍ମି) ଯନ୍ତ୍ରଁରେ ଲେଖା = ସାର
ଦେହରେ ଉଲ୍ଲେଖ ଅଛି ।

ବିଶ୍ୱର ପ୍ରଳୟ ଘଟିଲେ ବିଶ୍ୱାବଶେଷ (ସ୍ରଷ୍ଟା) ପରମେଷ୍ଠୀର ବାସ୍ତବ ଦର୍ଶନ ହୁଏ ଅର୍ଥାତ୍ ପରମ ତତ୍ତ୍ୱର ଲାଭ ହୁଏ । ଏହି ଚିଦାନନ୍ଦମୟ ପରମ ତତ୍ତ୍ୱ କେବଳ ମାତ୍ର ସତ୍‌ରେ ହିଁ ବିରାଜିତ ରହନ୍ତି । ସତ୍ୟର୍ଷି ପରମାତ୍ମା ଅଟନ୍ତି ।

ଓଁ

ଶମ୍ଭୁ ଆଳେ ଅଛି ମନ୍ତ୍ର ମହତ
କର ପାର ଯଦ ହୃଦୟ ଗତ ॥

\+ \+ \+

ଶମ୍ଭୁ ଆଳେ—ଶିବାଳୟରେ । ମଙ୍ଗଳ ଆଳୟରେ
ଅଛି—ବିଦ୍ୟମାନ
ମନ୍ତ୍ର ମହତ—ଏକ ମହତ ମନ୍ତ୍ର
କର ପାର ଯଦ—ତାହା ଯଦ ହୃଦୟରେ
ହୃଦୟ ଗତ—ସତତ ସ୍ଥାନ ଦିଆଯାଏ । ଅର୍ଥାତ୍
ମନ୍ତ୍ର ଯଦ ଅନବରତ ଜପ ହୁଏ ।

ଶିବାଳୟ (ମଙ୍ଗଳ ଆଳୟରେ) ଏକ ମହତ୍ ମନ୍ତ୍ର ସଦା ବିଦ୍ୟମାନ । ତାହା ଅନବରତ ଘଣ୍ଟ ନାଦର (ମଧ୍ୟ ଭାଗରେ) ମାଧ୍ୟମରେ ନିନାଦିତ ହେଉଅଛି । ଯଦ କୌଣସି ଭୃତଜନ୍ମା ଅନ୍ତର୍ଦୃଷ୍ଟି ବଳରେ ତାହା ହୃଦୟଗତ କରିପାରେ ଅବଶ୍ୟ ଶମ୍ଭୁ କୃପା ଲାଭ ହୋଇଥାଏ ।

ଓଁ

**ଜୟ ଚନ୍ଦ୍ରରଥ ଲାବଣ୍ୟ ରଥେ**
**ହେମ ମରକତ ଖଚନ୍ତ ପଥେ ॥**

\+ \+ \+

ଜୟ ଚନ୍ଦ୍ରରଥ ଲାବଣ୍ୟ ରଥେ— ଚନ୍ଦ୍ର ରଥର (ମାନବ ଶରୀର) ଲାବଣ୍ୟ ରଥରେ ଅଧିଷ୍ଠାନ କର। ସେହି ରଥ ଅତୀବ ସୁନ୍ଦର ଚନ୍ଦ୍ରପରି ଅନୁପମ ଲାବଣ୍ୟରେ ଭରା (ବିବେକ ଯାନ] ହେମ ମରକତ ଖଚିତ ରଥେ। ରଥର ଗତି ପଥ ସେହି ପଥ ସୁବର୍ଣ୍ଣରେ ନିର୍ମିତ ଏବଂ ତାର ଉପରେ ମରକତ ମଣି ଖଦ୍ୟମାନ
ହେ—ହେମ। ମ—ମରକତ

ଏହି ମହତ୍ ମନ୍ତ୍ରର ମନନ ପୂର୍ବକ ଚନ୍ଦ୍ର ରଥର ଲାବଣ୍ୟ ରଥରେ ଅଧିଷ୍ଠାନ କରି। ଏହି ଦିବ୍ୟରଥ ସୁ—ବର୍ଣ୍ଣ ନିର୍ମିତ ଏବଂ ତାହାର ଉପରେ ମରକତ ମଣି ରତ୍ନ ଆଚ୍ଛାଦିତ ଏପରି ଏକ ଅପୂର୍ବ ପଥରେ ଚଳାୟମାନ ହେବ।

।୧୦୦।

ଓଁ

ହେର ପ୍ରଣା ପାନେ ସମାନ ଛନ୍ଦା
ସମ କର ତାର ଦଉଡ଼ି ବନ୍ଧା ॥

\+ \+ \+

ହେର ପ୍ରାଣ ପାନେ—ଦେଖ ପ୍ରାଣ ଓ ଅପାନ ବାୟୁରେ ସମାନ ଛନ୍ଦା । ଏ ଦିବ୍ୟ ଯାନ ଛନ୍ଦା ହୋଇଅଛି

ସମକର ତାର—ଉଭୟର ବନ୍ଧନ

ଦଉଡି ବନ୍ଧା—ବିଷୟ ବିଷୟରେ ବିଷମତାକୁ ପ୍ରାପ୍ତ ହୋଇଅଛି ।

ପ୍ରଥମରେ ତାକୁ ସମ ଅବସ୍ଥାକୁ ଆଣ (ରଥ ଅଭିଯାନରେ ପତନ ଆଡକୁ ଯାଇ ପାରେ)

ଦେଖ, ପ୍ରାଣ ଓ ଅପାନ ବାୟୁ ରୂପା ସୁଦୃଢ଼ ରଜ୍ଜୁ ଦ୍ୱାରା ଏ ଦିବ୍ୟଯାନ କପରି ବିଷମତାକୁ ପ୍ରାପ୍ତ ହୋଇ ଅବ୍ୟବସ୍ଥିତ ଭାବେ ଛନ୍ଦା ହୋଇଅଛି । ସର୍ବ ପ୍ରଥମେ ଉକ୍ତ ରଜ୍ଜୁ ଦ୍ୱୟର ସମତା ପ୍ରତିପାଦନ କର । ରଥା-ଭିଯାନରେ ପତନ ଆଡକୁ ଯାଇପାରେ ।

ଓଁ

**ଥୟ କର ଚିତ୍ତ ଚଳାଅ ରଥ**
**ଚଉଦ ଭୁବନ ପଥ ବହୁତ ॥**

+ + +

ଥୟ କର ଚିତ୍ତ—ଚିତ୍ତର ସ୍ଥିରତାକୁ ଆଣ
(ଚିତ୍ତ ସବୁବେଳେ ଅସ୍ଥିର)
ଚଳାଅ ରଥ—ଅଭିଯାନ ଆରମ୍ଭ କର
ଚଉଦ ଭୁବନ ପଥ ବହୁତ—ସମୁଦାୟ ଚତୁର୍ଦ୍ଦଶ
ବ୍ରହ୍ମାଣ୍ଡକୁ ଏ ରଥ ଗତି ଅବାରିତ । ଏହା ଏକ
ଦୀର୍ଘ ପଥ । ଏ ସୂକ୍ଷ୍ମଯାନ ଗତିରେ ଚପଳତାର
ସ୍ଥାନ ନାହିଁ ।

ଚଳାୟମାନ ଚିତ୍ତର ସ୍ଥିରତା ସମ୍ପାଦନ ପୂର୍ବକ
ଅଭିଯାନର ଆରମ୍ଭ କର । ଏ ଦିବ୍ୟରଥ ଚତୁର୍ଦ୍ଦଶ
ବ୍ରହ୍ମାଣ୍ଡ ଅତିକ୍ରମ ପୂର୍ବକ ତତ୍ତ୍ୱାଭ୍ୟନ୍ତରକୁ ପ୍ରବେଶ
କରିବ । ଏହି ସୂକ୍ଷ୍ମଯାନର ଗତିରେ ଚପଳ ଚିତ୍ତ
ରଥାବରୋଧ କରିପାରେ ।

ଓଁ

ଚଳେ ଶୂନ୍ୟ ରଥ ବୁଦ୍ଧିର ବଳେ
ବିବେକ ସାରଥି ଗଗନ କଳେ ॥

\+ \+ \+

ଚଳେ ଶୂନ୍ୟ ରଥ—ଏ ମହାଶୂନ୍ୟ ଯାନ
ବୁଦ୍ଧିର ବଳେ – ଉତ୍ତମ ବୁଦ୍ଧି କୌଶଳ ବଳରେ
ଏ ଯନ୍ତ୍ର ଉତ୍ତମ ରଥ ଚଳାୟମାନ ହୁଏ ।
ବିବେକ ସାରଥି—ଏ ସୂକ୍ଷ୍ମ ଯାନର ସାରଥି
ବିବେକ ରଥର ଗତି କେତେ ଦୂର ଯେ କଳନା
କରିବାକୁ ପୂର୍ଣ୍ଣ ସମର୍ଥ ହୁଏ ।

ଏହି ମହାଶୂନ୍ୟ ଯାନ ଉତ୍ତମ ବୁଦ୍ଧିର କୌଶଳ ବଳରେ ଚଳାୟମାନ ହୁଏ । ଏ ସୂକ୍ଷ୍ମ ଯାନର ସାରଥି ବିବେକ । ଦ୍ରୁତଗାମୀ ରଥର ଗତି କେତେ ଦୂର ସେହି କଳନା କରିବାକୁ ପୂର୍ଣ୍ଣ ସମର୍ଥ ଅଟେ ।

ଓଁ

## ମୂଳାଧାରେ ଦେଖ ମହତ୍ତ୍ୱୀ ମାତା
## କୂଳି କୁଣ୍ଡଳିନୀ ଅପର୍ କଥା ॥

+ + +

ମୂଳାଧାରେ — ମୂଳ ଆଧାରରେ ଅର୍ଥାତ୍ (ମୂଳାଧାର ଚକ୍ରରେ)

ଦେଖ—ଦର୍ଶନ କର

କୂଳ କୁଣ୍ଡଳୀ—ମହାଶକ୍ତି (ସେ କୁଣ୍ଡଳିନୀ ସ୍ୱରୂପା)

ଅପର୍କଥା—ଯାହାକୁ କେହି ଜାଣି ପାରେନା

ପକ୍ଷାନ୍ତରେ ଅପର ପ୍ରକୃତି ଯାର ଇଙ୍ଗିତ ମାତ୍ର ଯାହାଠାରେ ପରିଲକ୍ଷ୍ୟ ହୁଏ ।

ଏହି ଦ୍ରବ୍ୟ ଋଥାବେଦଣ ପୂର୍ବକ ଦକ୍ଷିଣା ବର୍ତ୍ତ ଗତରେ ବହୁ ପଥ ଉଲ୍ଲଙ୍ଘନ କରି ମୂଳ ଆଧାର ଚକ୍ରକୁ ଗମନ କରେ । ସେହିଠାରେ କୁଣ୍ଡଳିନୀ ସ୍ୱରୂପା ପରମା ଶକ୍ତି (ଯେ କାହାର ଜ୍ଞାତ ନୁହେଁ) ପରମାଶ୍ରିତ ଅବସ୍ଥାରେ ଅନନ୍ତ କାଳରୁ ବିରାଜମାନ କରୁଅଛନ୍ତି ଦର୍ଶନ କର ।

ଓଁ

**ସୁଖେ ନିଦ୍ରାଯାଏ ସ୍ୱୟଂଭୂ ଲିଙ୍ଗେ**
**ତିନି ଅର୍ଦ୍ଧ ମାତ୍ରା ବେଢ଼ି ସୁରଙ୍ଗେ ।।**

+ + +

ସୁଖେ ନିଦ୍ରାଯାଏ—ଅନାଦି କାଳରୁ ଯେ ଯୋଗ ନିଦ୍ରାଗତ
ସ୍ୱୟଂଭୂ ଲିଙ୍ଗେ—ଯେ ନିଜକୁ ନିଜେ ସୃଷ୍ଟି କରି ପାରେ । ଯେ ଲିଙ୍ଗ ସ୍ୱରୂପ (ସେ ସର୍ବବିଦ୍)
ତିନି ଅର୍ଦ୍ଧ ମାତ୍ରା ବେଢ଼ି ସୁରଙ୍ଗେ—ପରମ ପୁରୁଷାକାରକୁ ଯେ ତିନି ଓ ଅର୍ଦ୍ଧ ମାତ୍ରାରେ ବେଷ୍ଟନ କରି ରହିଅଛି ।

(ଚକ୍ଷୁ ଦୃଷ୍ଟି ନିକ୍ଷେପ ବଳରେ) ଯୋଗ ନିଦ୍ରାଗତ ମହାଶକ୍ତି ଅନନ୍ତ କାଳରୁ ତିନି ଅର୍ଦ୍ଧ ମାତ୍ରାରେ ଲିଙ୍ଗାରୂଢ଼ ହୋଇ ଅର୍ଥାତ୍ (ତିନି ଅର୍ଦ୍ଧ ମାତ୍ରାରେ ସ୍ୱୟଂଭୂ ଲିଙ୍ଗକୁ ସୁନ୍ଦର ରୂପେ ବେଷ୍ଟନ କରି)ଥିବାର ଦର୍ଶନ କର ।

ଓଁ

**ଅନାଦି କାଳରୁ ମାତା ଶବରୀ**
**ଶିରେ ଧରି ଅଛୁ ଚଉଦ ପୁରୀ ॥**

+ + +

ଅନାଦି କାଳରୁ—ଅନନ୍ତ ଜନ୍ମରୁ
ମାତା ଶବରୀ—ମହାକାଳୀ ଯାର ଯୋଗ
ନିଦ୍ରାରେ ସମୁଦାୟ ଜଗତ୍ ବିଷୟ ସୃଷ୍ଟିରେ
ଭରି ରହିଛି ।
ଶିରେ ଧରି ଅଛୁ ଚଉଦ ପୁରୀ—ଯେ ଚାର
ମହତ୍ତ୍ୱ ଚୂଡ଼ାରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡକୁ ବହନ
କରିଅଛି ।

ଦେଖ କଲ୍ପାନ୍ତରରୁ ମାତା ଶବରୀ ମହାକାଳୀ (ଯାହାର ଯୋଗ ନିଦ୍ରାରେ) ସମୁଦାୟ ଜଗତ୍ ବିଷୟ ସୃଷ୍ଟି ଭରି ଚାର ମହତ୍ତ୍ୱ ଚୂଡ଼ାରେ (ମସ୍ତିଷ୍କ) ଚୂଡ଼ା ଦେଶରେ ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡକୁ ଅର୍ଥାତ୍ ପୂର୍ଣ୍ଣ ଜଗତକୁ ବହନ କରିଅଛି ।

ଓଁ

**ଅବିଦ୍ୟା ପର୍ବତେ ଏ ବିଦ୍ୟାଧରୀ**
**ସେବି ପାରିବ କି ? ମହତ ନାରୀ ।**

+ + +

ଅବିଦ୍ୟା ପର୍ବତେ—ଘନ ଅନ୍ଧକାରରେ ଅଜ୍ଞାନ ରୂପ ପର୍ବତରେ
ଏ ବିଦ୍ୟାଧରୀ—ଏକମାତ୍ର ଜ୍ଞାନ ସୂର୍ଯ୍ୟ ଜ୍ଞାନରୂପା ଯାହାଂର ଶରୀରରେ ସକଳ ମହତ ବିଦ୍ୟା ସ୍ଥାନ ପାଇ ଅଛି ।
ସେବି ପାରିବ କି—ଏହାର ଆରାଧନା କରି ପାରିବ କି ?
ମହତ ନାରୀ—ଯୋଗ ମାୟା, ଶ୍ୟାମା, ଜଗତ ଜନନୀ ଯାହାର ଶରୀର ଓଁକାର ରୂପ ଅଟେ ।

(ଅବିଦ୍ୟା ରୂପ ପର୍ବତରେ) ଅର୍ଥାତ୍ ଘନ ଅନ୍ଧକାର ମଧ୍ୟରେ (ବିଦ୍ୟାଧରୀ) ଏ ଏକ ମାତ୍ର ସୂର୍ଯ୍ୟ ରୂପା ଅଟନ୍ତି । ଏହି ମହାଶକ୍ତି (ଯ ହାର ଶରୀର ଓଁକାର ରୂପ ଅଟେ) ର ଆରାଧନା ସହଜ ସାଧ୍ୟ ନୁହେଁ ।

ଓଁ

ଅଗ୍ନି ସୋମେ ପୂଜା ହୁଏ ଏହାର
ପ୍ରାଣାହୂତି ତାର ଯଜ୍ଞରେ ସାର ।

+ + +

ଅଗ୍ନି—ପ୍ରାଣ
ସୋମ—ପ୍ରକାଶରେ
ପୂଜାହୁଏ—ଆରାଧନା କରେ
ଏହାର—ଜଗଦମ୍ବାର
ପ୍ରାଣାହୂତି—ସର୍ବତୋ ଭାବେ ଶରଣାଗତ ହେବ
ତାର ଯଜ୍ଞରେ ସାର—ତାର ଜଗତ ଯଜ୍ଞରେ ପ୍ରାଣର ଆହୂତି (ଜ୍ଞାନାଗ୍ନିରେ ଜଳି ଯିବା) ହିଁ ସାର ଅଟେ ।

ଅଗ୍ନି ଓ ସୋମରେ ଅର୍ଥାତ୍ ପ୍ରାଣ ଓ ପ୍ରକାଶରେ ଏହାର ଆରାଧନା କରଯାଏ । ଅପିତୁ ସର୍ବତୋ ଭାବେ ଏ ମହାଶକ୍ତିର ଶରଣାଗତ ନ ହେବା ଯାଏ (ଜ୍ଞାନାଗ୍ନିରେ ଜଗତ୍ ଜଳି ନ ଯିବା ପର୍ଯ୍ୟନ୍ତ) ଏ ଯୋଗ ଶକ୍ତିର କଦାପି ଲାଭ ହୁଏ ନାହିଁ ।

ଓଁ

ଉଠେ ନାଗ ମାତା ଶିର କମ୍ପାଇ
ବ୍ରହ୍ମ ନାଦେ ବ୍ରହ୍ମେ ରମିବା ପାଇଁ ॥

\+ \+ \+

ଉଠେ—ଜାଗ୍ରତ ହୁଏ
ନାଗ ମାତା – କାଳୀ କୁଣ୍ଡଳିନୀ ଶକ୍ତି
ଶିର କମ୍ପାଇ—ଶିରକୁ ଝୁଣ୍ଟି
ବ୍ରହ୍ମ ନାଦେ—ବ୍ରହ୍ମ ନାଦରେ
ବ୍ରହ୍ମେ—ବ୍ରହ୍ମାନନ୍ଦରେ ରମିବା ପାଇଁ । ରମଣ କରିବା ପାଇଁ କୁଣ୍ଡଳିନୀର ଜାଗ୍ରତ ହୁଏ ।

ଯେଉଁ ଭକ୍ତର ଭଜନ ଯୁକ୍ତ ଆରାଧନାରେ ଏ ପରମ ମାତା ତୁଷ୍ଟି ଲାଭ କରନ୍ତି, ତାହାଙ୍କୁ ଶ୍ରୀ ଦିବ୍ୟଚକ୍ଷୁ ଲାଭ ହୁଏ । ଏହି ପ୍ରାପ୍ତ ଜ୍ଞାନ ଚକ୍ଷୁ ବଳରେ ସେ ଦେଖିବାକୁ ସମର୍ଥ ହୁଏ । ମହାକାଳୀ, କୁଣ୍ଡଳିନୀ ଶକ୍ତି ଯୋଗନିଦ୍ରା ତ୍ୟାଗ ପୂର୍ବକ ବ୍ରହ୍ମନାଦ ଓଁକାରର ମାଧ୍ୟମରେ ଅତି ପ୍ରଚଣ୍ଡ ବେଗରେ (ଚମତ୍କାର ଲାଭାର୍ଥେ) ବ୍ରହ୍ମାନନ୍ଦରେ ରମଣ କରିବା ପାଇଁ ଉର୍ଦ୍ଧ୍ୱଗତିକୁ ଧାରଣ କରେ । ଅର୍ଥାତ୍ କୁଣ୍ଡଳିନୀର ଜାଗ୍ରତ ହୁଏ ।

ଓଁ

ତିନି ସଖୀ ତହିଁ କରନ୍ତି ବାସ
ଇଡ଼ା ସୁସୁମ୍ନା ପିଙ୍ଗଳା ଭାଷ ॥

\+ \+ \+

ତିନି ସଖୀ ତହିଁ = ତିନୋଟି ସହଚରୀ ।
କରନ୍ତି ବାସ = ଜଗତ୍ ମାତାର ସେବାରେ ସତତ ସଂଯୁକ୍ତ ।
ଇଡ଼ା, ସୁସୁମ୍ନା; ପିଙ୍ଗଳା ଭାଷ = ଇଡ଼ା, ସୁସୁମ୍ନା ଓ ପିଙ୍ଗଳା ନାମରେ ବଦିତ ଅଟନ୍ତି ॥

ଏହି ପରମ ପୀଠରେ ଜଗଦମ୍ବାର ସେବାରେ ସତତ ସଂଯୁକ୍ତା ॥ ଇଡ଼ା, ପିଙ୍ଗଳା ଓ ସୁସୁମ୍ନା ନାମା ଅନ୍ୟ ତିନୋଟି (ସହଚରୀ) ରୂପଶକ୍ତି ସଦା ବିଦ୍ୟମାନ ॥ ଜଗତ କାରଣୀ ଏହି ରୂପଶକ୍ତି ମାନଙ୍କ ସାହାଯ୍ୟରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ରକ୍ଷା ସାଧନ କରେ ॥

ଓଁ

**ସହଚରୀ ସଙ୍ଗେ ରଙ୍ଗେ ଦୋହଲି**
**ଜ୍ଞାନ ରନ୍ଧ୍ରେ ଭେଦେ ଯାଏଣ୍ଟି ଗଲି ॥**

\+ × ×

ସହଚରୀ ସଙ୍ଗେ—ସଖି ମାନଙ୍କ ସଙ୍ଗରେ ।
ରଙ୍ଗେ ଦୋହଲି— ବଚିଷ୍ଟାକୁ ଧାରଣ କରି (ଅନୁପମ ରଙ୍ଗରେ ଦୋଳାୟମାନ ଅବସ୍ଥା )
ଜ୍ଞାନ ରନ୍ଧ୍ରେ—ସୁଷୁମ୍ନା ବିବରରେ (ସୁଷୁମ୍ନା ନାଡ଼ି ମଧ୍ୟରେ)
ଭେଦେ—ମହା ତେଜରେ ।
ଯାଏଣ୍ଟି ଗଲି—ପ୍ରବେଶ କରେ ।
କୁଳ କୁଣ୍ଡଳିନୀ ଜାଗ୍ରତର ପ୍ରଥମାବସ୍ଥା ॥

ସହଚରୀ ମାନଙ୍କ ସଙ୍ଗରେ ଅନୁପମ ରଙ୍ଗରେ ଦୋଳାୟମାନ ପରମା(ଆଦ୍ୟଶକ୍ତି) ସୁଷୁମ୍ନା ବିବରରେ (ଜ୍ଞାନରନ୍ଧ୍ରରେ) ସହସା ପ୍ରବେଶ କରେ ॥ ଏହା ମହତ ମାତା କୁଣ୍ଡଳିନୀ ଜାଗ୍ରତର ପ୍ରଥମ ଅବସ୍ଥା ॥

ଓଁ

ଗ୍ରନ୍ଥି ଫିଟିଯାଏ ଛଅ ଚକ୍ରର
ମୂର୍ଦ୍ଧା ଫାଟି ଯାଏ ଭବ ନକ୍ରର ॥

+ + ×

ଗ୍ରନ୍ଥି ଫିଟିଯାଏ—ମାର୍ଗ ଖୋଲି ଯାଏ । ଛଅଟି ଚକ୍ରର (ଜୀବନୀ କେନ୍ଦ୍ର)
ଚକ୍ରାଧାର—ମେରୁ ମଧ୍ୟ ସ୍ଥିତ ସୂକ୍ଷ୍ମମାର୍ଗ ।
ମୂର୍ଦ୍ଧା ଫାଟିଯାଏ—ଶିର ଶତଧା ଚୂର୍ଣ୍ଣ ହୁଏ ।
ଭବନକ୍ରର—ସଂସାର ରୂପୀ କୁମ୍ଭୀରର ।
ମୂଳାଧାର,ସ୍ୱାଧିଷ୍ଠାନ, ମଣିପୁର,ଅନାହତ, ବିଶୁଦ୍ଧ ଓ ଆଜ୍ଞା ॥

ଏହି ମହାତେଜା କୁଣ୍ଡଳିନୀର ଜାଗ୍ରତରେ ଷଟ୍‌ଚକ୍ର ଅନ୍ତର୍ବର୍ତ୍ତୀ (ମେରୁ ମଧ୍ୟସ୍ଥିତ)ସୁଷୁମ୍ନାଡିସୂକ୍ଷ୍ମ ମାର୍ଗ ଯାହା ବହୁ ଗ୍ରନ୍ଥିଯୁକ୍ତ (ବନ୍ଧାବରୋଧ) ତାର ସହସା ଉନ୍ମୋଚନ ହୋଇଯାଏ । ପରମ ତେଜର ପ୍ରକାଶରେ ସଂସାର ରୂପୀ କୁମ୍ଭୀରର ମୂର୍ଦ୍ଧା ଶତଧା ବିଦୀର୍ଣ୍ଣ ହୁଏ । ଅର୍ଥାତ୍ ଜଗତର ମହାପ୍ରଳୟ ଘଟେ ।

ଓଁ

## ମୂଳାଧାର ମିଶେ ସ୍ୱ ଅଧିଷ୍ଠାନେ
## ଅଧିଷ୍ଠାନ ମଣି ପୂର ଗମନେ ॥

+ + +

ମୂଳାଧାର ମିଶେ—ମୂଳାଧାର ଅଧିଷ୍ଠାନ ଚକ୍ରରେ ଲୟ ଯାଏ

ସ୍ୱ ଅଧିଷ୍ଠାନେ—ଅର୍ଥାତ୍, ଷିତ୍ ଅପର ସାନ୍ନିଧ୍ୟ ଲାଭ କରେ, ସଙ୍କଳ୍ପ ରସମୟ ହୋଇଯାଏ

ଅଧିଷ୍ଠାନ ମଣିପୂର ଗମନେ— ଅଧିଷ୍ଠାନ ଚକ୍ର ମଣିପୂର ଚକ୍ରରେ ଲୟ ଯାଏ । ଅତ୍ ତେଜ, ଯୁକ୍ତ ହୁଏ ସଙ୍କଳ୍ପ ତେଜୋମୟ ପ୍ରତିଷ୍ଠା ଲାଭ କରେ, ପ୍ରାଣମୟ ଜଗତ୍ ବର୍ତ୍ତମାନ ଅଗ୍ନି ବର୍ତ୍ତୀ । ତେଜୋମୟୀ ମହାମାୟାର ରୂପ ଅଟେ ।

ମୂଳାଧାର ଅଧିଷ୍ଠାନ ଚକ୍ରରେ ଲୟ ଯାଏ । ଅର୍ଥାତ୍ ସଙ୍କଳ୍ପ ରସମୟ ପୁନଃ ସ୍ୱାଧିଷ୍ଠାନ ମଣିପୂର ଚକ୍ର ଗତ ହୁଏ ଅର୍ଥାତ ସଙ୍କଳ୍ପ ବର୍ତ୍ତମାନ ତେଜଯୁକ୍ତ (ପ୍ରାଣମୟ ଜଗତ୍) ଧର, ରସରେ ଲୀନ ପୁନଃ ରସ ତେଜରେ ଲୀନ ହୋଇଗଲା ।

ଓଁ

# ମଣିପୁର ଯାନ୍ତା ଅନାହତରେ
# ଅନାହତ ଲମ୍ଭେ ବିଶୁଦ୍ଧ ସରେ ॥

+ + +

ମଣିପୁର ଯାନ୍ତା — ମଣିପୁର ଅନାହତ ଚକ୍ର ।
ଅନାହତରେ ଲୟ ଯାଏ
ପରମ ତେଜ— ବାୟୁ ବାୟୁ ସ୍ୱରୂପକୁ ଧାରଣ
କରେ । ଏହା ଅନାହତ ନାଦର ସ୍ଥାନ ଅଟେ ।
ଅନାହତ ଲମ୍ଭେ ବିଶୁଦ୍ଧ ସରେ — ଅନାହତ
ବିଶୁଦ୍ଧ ଚକ୍ରରେ ଲୟ ଯାଏ । ପରମ ବାୟୁ ରୂପା
ମହା ଅନ୍ତରୀକ୍ଷକୁ ଗମନ କରେ (ସମ୍ପୂର୍ଣ୍ଣ ବାୟୁ
ମଣ୍ଡଳ ଅନ୍ତରୀକ୍ଷକୁ ଆଶ୍ରୟ କରେ । ଏହା
ଜୀବାତ୍ମାର ବିଶୁଦ୍ଧ ଗତି ଯୋଗ ବର୍ତ୍ତୀ ଉଗ୍ରଙ୍କର
ରୂପ ତ୍ୟାଗ ପୂର୍ବକ ପ୍ରସନ୍ନ ଶାନ୍ତ ମୂର୍ତ୍ତିରେ
ବିଦ୍ୟମାନ ରହନ୍ତି ।

ତେଜୋମୟ ମଣିପୁର ଚକ୍ର ଊର୍ଦ୍ଧ୍ୱଗତିରେ ଅନାହତ
ଚକ୍ରରେ ଆଶ୍ରୟ ନିଏ । ଏହାହିଁ ନାଦର ପରମ ସ୍ଥାନ
ବାୟୁବାୟୁ ଜଗତ୍ । ଏହି ବାୟୁ ଚକ୍ର ବିଶୁଦ୍ଧ ଚକ୍ର
ଆଡ଼କୁ ଲମ୍ବାୟମାନ ହୁଏ ଓ ବିଶୁଦ୍ଧତାରେ ବିଶୁଦ୍ଧ
ହୋଇଯାଏ । ଏହା ଜୀବାତ୍ମାର ବିଶୁଦ୍ଧ ଗତି । ଯୋଗ
ବର୍ତ୍ତୀ ରୁଦ୍ରାୟଣୀ ରୂପରେ ଏହି ଚକ୍ରକୁ ଆଶ୍ରୟ କରନ୍ତି ।

ଓଁ

**ନାକ ଲୋକ ଦେଇ ବିଶୁଦ୍ଧ ଗତି**
**ଆଜ୍ଞା ଚକ୍ରେ ଶିବେ ଭେଟଇ ସତୀ ॥**

+ + +

ନାକ ଲୋକ ଦେଇ ବିଶୁଦ୍ଧ ଗତି — ସ୍ୱର୍ଗ ଦ୍ୱାର ଉନ୍ମୁକ୍ତ ହୁଏ । ଏହି ଚେତନ ପଥରେ ବିଶୁଦ୍ଧ ଆଜ୍ଞା ଚକ୍ରରେ ପ୍ରବେଶ କରେ । (ବାରଣାସୀ)
ଯୋଗମାୟାର ଯୋଗ ଗତି ପରମ ଶୁଭ୍ରତାର ମାଧ୍ୟମରେ ସଙ୍ଘଟିତ ହୁଏ ।
ଆଜ୍ଞା ଚକ୍ରେ—ଗୁରୁ ଚକ୍ରରେ
ଶିବେ — ପରମ ଶିବରେ
ଭେଟଇ—ସାକ୍ଷାତ ହୁଏ । ସତୀ—ମହାସତ୍ୟରେ ମିଳନ ହେବାର ପ୍ରୟାସ । ଯୋଗମାୟା । ପରମ --ଚରମ ମାୟା ତ୍ୟାଗ ପୂର୍ବକ ପୂର୍ଣ୍ଣ ଯୋଗରେ ଯୋଗାନନ୍ଦ ସଙ୍ଗେ ମିଳିତ ହୁଏ

ଏହି ବିଶୁଦ୍ଧ ଚକ୍ରରୁ ସ୍ୱର୍ଗ ଦ୍ୱାରରେ ଉନ୍ମୁକ୍ତ ହୁଏ । ଏହି ଚେତନ ପଥରେ ଉର୍ଦ୍ଧ୍ୱ ଗତି ରତା ବିଶୁଦ୍ଧ, ଆଜ୍ଞା ଚକ୍ରକୁ ଲାଭ କରେ । ମହାସତୀର ଯୋଗାନନ୍ଦ ଲାଭ-ହୋଇଗଲା । ଏହି ଗୁରୁ ଚକ୍ର ତପ ଲୋକଙ୍କି ଅଟେ । ଯୋଗବର୍ତ୍ତୀ ବର୍ତ୍ତି ତ୍ୟାଗ ପୂର୍ବକ ପରମ ଶୁଭ୍ରତାର ବନ୍ଧୁ ଆଶ୍ରିତ ହୋଇଗଲା ।

ଓଁ

# ମହା ମିଳନ ଏ ଶିବ ଶିବାର
# ଗୋଲକ ମଣ୍ଡଳ ପ୍ରବେଶ ଦ୍ୱାର ॥

+ + +

ମହା ମିଳନ ଏ—ଏହା ମହତ୍ ମିଳନ (ଚିତ୍+
ସତ୍) ଚିତ୍ ସତ୍ ଅବସ୍ଥା—ଯୁଗ୍ମାବସ୍ଥା
ଶିବା ଶିବର—ପରମ ପୁରୁଷ ଓ ପରମ ପ୍ରକୃତି
(ସ ଓ ମ)ର କୈବଲ୍ୟ—କେବଳତ୍ୱ
ଗୋଲକ ମଣ୍ଡଳ—ଜ୍ଞାନ ଲୋକ ମଣ୍ଡଳରେ
ପ୍ରବେଶ ଦ୍ୱାର—ପ୍ରବେଶ ପଥ

ଏହା ଚିତ୍ ଓ ସତ୍ ର ମହତ୍ ମିଳନ ଅଟେ । ଶିବ ଓ ଶିବାର ଯୁଗ୍ମାବସ୍ଥା । ପରମ ପୁରୁଷ ଓ ପରମା ପ୍ରକୃତି ସ ଓ ମ ରୂପ କୈବଲ୍ୟ ଅଟେ । ସର୍ବୋପରି ଏହାହିଁ ଜ୍ଞାନାଲୋକ ମଣ୍ଡଳର ପ୍ରବେଶ ପଥ ।

ଓଁ

# ମିଶିଗଲା ପବନରେ ରତନ
# ବର ଊର୍ଦ୍ଧ୍ୱଗତ ହଂସ ଗମନ ।

+ + +

ମିଶିଗଲା ପବନରେ ରତନ— ପରମ ଶିବା ଓ
ପରମ ଶିବ ର ମିଳନ ର ସମାପ୍ତି ଘଟିଲା
ପବନ—ଶିବ "ମ"
ରତନ—ଶିବା "ର" ଭର ଊର୍ଦ୍ଧ୍ୱଗତ
ପରମ କୈବଲ୍ୟ ର ଅନ୍ତ ( ଉଚ୍ଚ ପୃଷ୍ଠ )
ଊର୍ଦ୍ଧ୍ୱଗତ
ହଂସ ଗମନ — ପରମ ହଂସ ରୂପ ଦର୍ଶନର
ଆରମ୍ଭ ହେଲ

ପରମଶିବ ଓ ଶିବାର ମହାମିଳନ ସଙ୍ଘଟିତ ହେଲା ।
ଶିବା –ର ଓ ଶିବ — ମ ପରମ ଯୋଗରେ ବିନ୍ଦୁ
ନାଦାତ୍ମିକା ଚନ୍ଦ୍ରମସ୍ତ ଚନ୍ଦ୍ରରେ ଊର୍ଦ୍ଧ୍ୱ ଉତଗତ
ପରମ ହଂସ ଯୋଗ ଧାରଣ କଲେ ।

ଓଁ

ଛାୟା ଲଭିଗଲା ଶିବ ପରଶେ
ଜ୍ୟୋତି ରୂପୀ ଶିବ ଉଠେ ହରଷେ ॥

\+ × +

ଛାୟା ଲଭିଗଲା—ମହାକାଳୀର କରାଳ ରୂପ
ଲୟ ଗଲା (ଘନ ଅନ୍ଧକାର ଲଭି ଗଲା)
ଶିବ ପରଶେ—ଶିବାଲିଙ୍ଗନରେ । ଆନନ୍ଦ ରସ
ପାନରେ
ଜ୍ୟୋତି ରୂପୀ ଶିବ—ବ୍ରହ୍ମ ଜ୍ୟୋତି ରୂପୀ ଶିବ
(ମଙ୍ଗଳମୟ)
ଉଠେ ହରଷେ—ମହା ପ୍ରଳୟରେ ଅବଶେଷ ।
ଯେ ପରମ ସତ୍ୟ, ସେ ସର୍ବ ଭେଦ୍ =ଓ ସର୍ବତ୍ର
ବିଦ୍ୟମାନ ଯାହାର ସ୍ଥାନ ବର୍ତ୍ତମାନ ସହସ୍ରାର
ଚକ୍ର ।

ପରମାନନ୍ଦ ରସ ପାନରେ ମହାକାଳୀର କରାଳ ରୂପର
ଲୟ ହେଲା (ଘନ ଅନ୍ଧକାର ଲଭିଗଲା) ମଙ୍ଗଳମୟ
ବ୍ରହ୍ମ ଜ୍ୟୋତିର ପରମ ପ୍ରକାଶରେ ପ୍ରଳୟା
ବଶେଷ ଏକ ମାତ୍ର ସତ୍ୟ ହିଁ ସର୍ବତ୍ର ପ୍ରକାଶମାନ
ଏହାହିଁ ସତ୍ୟ ଲୋକ ସହସ୍ରାର ଚକ୍ର ଅଟେ ।

ଓଁ

ବର୍ଣ୍ଣ ଅଣଗ୍ନଂଶ ଲଭିଲା ଲୟ
ତିନି ବର୍ଣ୍ଣ ନାଦ ଓଁକାର ମୟ ॥

\+ \+ \+

ବର୍ଣ୍ଣ ଅଣ୍ୱେଂଶ—ଅଣ୍ୱେଂଶ ବର୍ଣ୍ଣ (ଅଣ୍ୱେଂଶ ପବନ)

ଲଭିଲ ଲୟ—ଶେଷ ହେଲ ଅର୍ଥାତ୍ ଅକ୍ଷର ବର୍ଣ୍ଣ ବିଲୀନ ହୋଇଗଲ

ତିନି ବର୍ଣ୍ଣ ନାଦ ଓଁକାର ମୟ ଅ+ଉ+ମ ଓଁ ଅବଶେଷ ମାତ୍ର ଜ୍ୟୋତିର୍ମୟ ପରମ ଓଁକାର ରୂପ । ୧-ମୂଳାଧାର, ୨-ସ୍ୱାଧିଷ୍ଠାନ, ୩-ମଣିପୁର ୪-ଅନାହତ, ୫-ବିଶୁଦ୍ଧ, ୬-ଆଜ୍ଞା

ଅଣ୍ୱେଂଶ ବର୍ଣ୍ଣର ଲୟ ହେଲ । ଅର୍ଥାତ୍ ଅକ୍ଷର ବର୍ଣ୍ଣ ଚକ୍ରରେ ବିଲୀନ ହୋଇଗଲ । ଷଡ଼ଚକ୍ରର ପରି ସମାପ୍ତି ହେଲ । ସର୍ବୋପରି ପରମ ନାଦ ଅ, ଉ, ମ ଓଁକାର ଏକ ଜ୍ୟୋତିର୍ମୟ ରୂପ। ଅବଶେଷ ମାତ୍ର ଏହାହିଁ ସଚ୍ଚିତ୍ ଆନନ୍ଦ ରୂପ (ସତ୍ ଚିଦାନନ୍ଦ ଘନ)

ଓଁ

**ନାଦ ଅର୍ଦ୍ଧ ମାତ୍ରା ବିନ୍ଦୁ ରମଇ**
**ଚରାଚର ବିଶ୍ୱ ଜଗତ ସାଇଁ ॥**

+ + +

ନାଦ ଅର୍ଦ୍ଧ ମାତ୍ରା—ଏହି ପରମ ନାଦଙ୍କ ଅର୍ଦ୍ଧ ମାତ୍ରା ଓଁ କାରର ଘନୀଭୂତ ଅବସ୍ଥା । ଅଧା--ର (ଅର୍ଦ୍ଧମାତ୍ରା) —ଧା· ର+ମ,=ଧା-ର, ର କୁ ଯେ ଧାରଣ କରେ । ପରମ ଆହ୍ଲାଦମୟୀ ପ୍ରକୃତି ବିନ୍ଦୁ ରମଇଁ—ଜ୍ୟୋତି (ନିରାଧାର ଚେତନ) ବ୍ରହ୍ମ (ସତ୍ ଚିତ୍ ଆନନ୍ଦ ଘନ) ପରମାନନ୍ଦ ବିନ୍ଦୁ ଯେ ଏହି ଆଧାର ଉପରେ କ୍ରିୟା କରେ । ରମଣ କରେ । ରମଇ+ରମ୍ ଓଁ ନାମରେ ଯେ ପର୍ଯ୍ୟନ୍ତ

ଚରାଚର ବିଶ୍ୱ ଜଗତ ସାଇଁ — ଯେ ସମୁଦାୟ ଜଗତର ଏକମାତ୍ର ଈଶ୍ୱର (ଜଗଦୀଶ୍ୱର)

ପରମ ନାଦଙ୍କ ଅର୍ଦ୍ଧମାତ୍ରା (ଓଁକାର ଘନୀଭୂତ ଅବସ୍ଥା ଯାହାକୁ ନିରାଧାର ବିନ୍ଦୁ (ତତ୍ତ୍ୱ ନିରଞ୍ଜନ) ହିଁ ରମଣ କରେ । ଯେ ସମୁଦାୟ ଜଗତର ଏକମାତ୍ର ଈଶ୍ୱର ଜଗଦୀଶ୍ୱର ସେହି ବିନ୍ଦୁ ଅଟେ ।

ଓଁ

ତତ୍ତ୍ୱ ସୀତାରାମ ସତ୍ୟ ବଳୟୁ
ସଦା ଶମ୍ଭୁ ଶିରେ ଜୟୁ ଚନ୍ଦ୍ରୟୁ ॥

+ + +

ତତ୍ତ୍ୱ ସୀତା ରାମ—ପରମ ତତ୍ତ୍ୱ ସୀତାରାମ ହିଁ ଅଟେ
ସତ୍ୟ ବଳୟୁ—ଯେ ପୂର୍ଣ୍ଣ ସତ୍ୟ ବଳୟୁ (ଅଖଣ୍ଡ ମଣ୍ଡଳାକାର)
ସଦା ଶମ୍ଭୁ ଶିରେ—ସବୁବେଳେ ଶିବ ଲଲାଟରେ ପରମ ଶିବଙ୍କ ଭାଲ ପ୍ରଦେଶରେ ।
ଜୟୁ ଓ ଚନ୍ଦ୍ରୟୁ— ଜୟୁ+ଚନ୍ଦ୍ରୟୁ ଅଟନ୍ତି

(ଅଖଣ୍ଡ ମଣ୍ଡଳାକାର) ଯେ ପୂର୍ଣ୍ଣ ସତ୍ୟ ବଳୟୁ ସେହି ପରମ ତତ୍ତ୍ୱ ଅଟେ । ଶମ୍ଭୁ ଲଲାଟରେ ଯେ ଜୟୁ ଓ ଚନ୍ଦ୍ରୟୁ ନାମରେ ନିତ୍ୟ ବିରାଜମାନ କରେ, ସେହି ଅଖଣ୍ଡ ମଣ୍ଡଳାକାର ଅର୍ଥାତ୍ ସୀତା ରାମ ହିଁ ଅଟେ ।

ଓଁ

ଜ୍ୟୋତି ବ୍ରହ୍ମସ୍ବାର ନାମ ସୁନ୍ଦର
ଆତ୍ମାରାମ ରମେ ସଚରାଚର ॥

\+ \+ \+

ଜ୍ୟୋତି ବ୍ରହ୍ମସ୍ବାର ନାମ ସୁନ୍ଦର — ଏହାର ପରମ ସୁନ୍ଦର ନାମ (ଚିତ୍ତଂମୟୀ) ଜ୍ୟୋତି ବ୍ରହ୍ମ ଅଟେ ।
ଆତ୍ମାରାମ ରମେ — ଏହି ଆତ୍ମା ରୂପୀ ପରମାତ୍ମା ରାମ ସର୍ବଦା ରମଣ କରେ । ଆତ୍ମାରେହିଁ ଆତ୍ମାର ରମଣ = ଆତ୍ମାରାମ ଆତ୍ମାରେ = ପରମାତ୍ମାର ଆବେଗ = ଆତ୍ମାରାମ

ଏହାର ପରମ ସୁନ୍ଦର ନାମ ଜ୍ୟୋତିବ୍ରହ୍ମ ଅଟେ । ଏହି ଆତ୍ମା ରୂପୀ ରାମ ପରମାତ୍ମାହିଁ ସର୍ବଦା ରମଣ କରେ ଅର୍ଥାତ୍ ଜଗତ୍ ପୂର୍ଣ୍ଣାନନ୍ଦ ରାମ ।

ଓଁ

ନମେ ଗୁରୁପାଦ ଯୋଗ ବାଶିଷ୍ଟ
ଯହିଁ ରାମ ତତ୍ତ୍ୱ ଗତ ବରିଷ୍ଟ ॥

× × ×

ନମେ ଗୁରୁପାଦ—ମୁଁ ପରମ ଗୁରୁ ପାଦ
ଯୋଗବାଶିଷ୍ଟ — ଯୋଗ ବାଶିଷ୍ଟଙ୍କୁ ନମସ୍କାର
କରୁଅଛି । ପରମ ଯୋଗରେ ଯେ ଅବଶେଷ
ସାକ୍ଷାତ୍ ପରଂବ୍ରହ୍ମଙ୍କୁ ଯହିଁ ରାମଚନ୍ଦ୍ର ଗତ ବରିଷ୍ଟ
=ଯେଉଁଠାରେ କି ପରମ ତତ୍ତ୍ୱ ର ଓ ମ ଅଛି
ମସ୍ଥାନ ।

ମୁଁ ପରମ ଗୁରୁପାଦ ଯୋଗବାଶିଷ୍ଟ କୁ କୃତାଞ୍ଜଳ ପୂର୍ବେ
ନମସ୍କାର କରୁଅଛି । ଯେଉଁଠାରେ ପରମ ତତ୍ତ୍ୱ ରାମ
(ର+ମ) ଅତି ବକ୍ଷସ୍ଥାନ ଅଟେ ।

ଓଁ

**ବିବେକ ନୟନେ ଦେଖ ଗମ୍ଭିର**
**ଅବଧ ନରେଶ ନୃପତି ହୀର ।।**

\+ \+ \+

ବିବେକ ନୟନେ ଦେଖ ଗମ୍ଭିର—ଜ୍ଞାନନେତ୍ର
ଉନ୍ମୋଚନ କରି ଏବଂ ହୃଦୟରେ କଏ ବିରାଜ
ମାନ ଅତ୍ୟନ୍ତ ଉତ୍ତମ ରୂପେ ଦର୍ଶନ କର ।
ଅବଧ ନରେଶ—ଅଯୋଧ୍ୟାଧିପତି । ପତିତ-
ପାବନ ମର୍ଯ୍ୟାଦା ପୁରୁଷୋତ୍ତମ ସଚ୍ଚିଦାନନ୍ଦ
ଘନ ଆନନ୍ଦକନ୍ଦ ଶ୍ରୀ ରାମଚନ୍ଦ୍ର
ନୃପତି ହୀର—ନୃପତି ଚୂଡ଼ାମଣି

ଜ୍ଞାନନେତ୍ର ଉନ୍ମୋଚନ ପୂର୍ବକ ହୃଦୟ ସିଂହାସନ-
ରେ କଏ ବିରାଜମାନ ଉତ୍ତମ ରୂପେ ଦର୍ଶନ କର ।
କେବଳ ନୁହେଁ ପରମ ତତ୍ତ୍ୱ ପତିତ ପାବନ ସଚ୍ଚିଦାନନ୍ଦ
ଘନ ଆନନ୍ଦ କନ୍ଦ ନୃପତି ଚୂଡ଼ାମଣି ଶ୍ରୀରାମ ।

ଓଁ

**ବାହାର ବୈଦେହୀ ଲାଳସ ମତ**
**ରତ୍ନ ସିଂହାସନେ ଓଠକାନ୍ତ ଛତ ।।**

\+ \+ \+

ବାହାର ବୈଦେହୀ ଲାଳସ ମତ — ଯେ ନିଜର
ଅହେତୁକ କୃପାବଳରେ ଅଧର୍ମର କ୍ଷୟ ଓ
ଉତ୍ତମ ଧର୍ମର ସ୍ଥାପନ ପାଇଁ ବଦ୍ଧ ରୁଚି
ବୈଦେହୀ ବିଳାସ ପ୍ରୟାସୀ ହୋଇ
ରତ୍ନ ସିଂହାସନେ ଠେକାନ୍ତ ଛତ — ମଣିମୟ
ସିଂହାସନରେ ଲକ୍ଷ୍ମଣ, ରାମ, ଜଗତ ଜନନୀ
ଜାନକୀଙ୍କ ସହିତ ଅନୁପମ ଲାବଣ୍ୟରେ ବିରାଜିତ
ଅଛନ୍ତି ।

ସେ ନିଜର ଅହେତୁକ କୃପାରେ ଉତ୍ତମ ଧର୍ମର ସ୍ଥାପନ ପାଇଁ ବଦ୍ଧ ରୁଚି, ବୈଦେହୀ ବିଳାସ ପ୍ରୟାସୀ ହୋଇ ବିବିଧ ଛନ୍ଦ ରତ୍ନର ଯୁକ୍ତ ମଣିମୟ ସିଂହାସନରେ ବିରାଜମାନ କରୁଅଛନ୍ତି । ଏହି ବିଦେହ ରାଜନନ୍ଦିନୀ ବିଳାସ ଯୁକ୍ତ ଶ୍ରୀରାମ ଙ୍କୁ ଭଜନ୍ତୁ ।

ଓଁ।

ଧର୍ଚ୍ଛନ୍ତି ସ୍ୱର୍ଣ୍ଣଦଣ୍ଡ ଭରତ
ଛତ୍ର ଟେକଛନ୍ତି ସୁମିତ୍ରା ସୁତ ॥

\+ \+ \+

ଧରଛନ୍ତି ସ୍ୱର୍ଣ୍ଣଦଣ୍ଡ ଭରତ—ଦକ୍ଷିଣ ପାର୍ଶ୍ୱରେ ଚତୁର ସ୍ୱର୍ଣ୍ଣ ଦଣ୍ଡ ହସ୍ତ(ଭରତ ସୁଷୁପ୍ତି ରୂପ) କମନୀୟ କାନ୍ତିରେ ଦଣ୍ଡାୟମାନ

ଛତ୍ର ଟେକଛନ୍ତି ସୁମିତ୍ରା ସୁତ — ବହୁମୂଲ୍ୟ ରତ୍ନଯୁକ୍ତ ସୁଶୋଭିତ ସୁନ୍ଦର ଲୋଳାୟମାନ ଛତ୍ର (ଜାଗ୍ରତ ରୂପ ସୁମିତ୍ରା ନନ୍ଦନ ଲକ୍ଷ୍ମଣଙ୍କ ହସ୍ତରେ ଶୋଭାୟମାନ ହେଉଅଛି । ସେ କ ଅନୁପମ ଲାବଣ୍ୟ ଭବ ମନ ମୁଗ୍ଧକର ଠାଣିରେ ପୃଷ୍ଠ ଭାଗରେ ଦଣ୍ଡାୟମାନ ଅଛନ୍ତି

ଚତୁର ସ୍ୱର୍ଣ୍ଣ ଦଣ୍ଡ ହସ୍ତ (ଭରତ) ଦକ୍ଷିଣ ପାର୍ଶ୍ୱରେ କମନୀୟ କାନ୍ତିରେ ଦଣ୍ଡାୟମାନ ( ଏହା ବ୍ରହ୍ମର ସୁଷୁପ୍ତି ଅବସ୍ଥା) । ବହୁମୂଲ୍ୟ ରତ୍ନ ଯୁକ୍ତ ସୁଶୋଭିତ ସୁନ୍ଦର ଲୋଳାୟମାନ ଛତ୍ର ଧାରଣ ପୂର୍ବକ ସୁମିତ୍ରା ନନ୍ଦନ ଲକ୍ଷ୍ମଣ ପୃଷ୍ଠ ଭାଗରେ ଅନୁପମ ଲାବଣ୍ୟ ଭବ ମନ ମୁଗ୍ଧ କର ଠାଣିରେ ଦଣ୍ଡାୟମାନ । ଏହା ବ୍ରହ୍ମର ଉକାର ଛତ୍ର ରୂପୀ ଜାଗ୍ରତ ରୂପ ।

ଓଁ

ସ୍ୱମର ଭାଳନ୍ତି ରୂପ ସୃଜନ
ପଦବନ୍ଦେ ହନୁ ସେ ମହୀୟାନ ॥

+ + +

ସ୍ୱମର ଭାଳନ୍ତି ରୂପ ସୃଜନ = ପରମ ସୁନ୍ଦର ଅନୁପମ ମାଧୁର୍ଯ୍ୟ ଭରା କନକ ଗୌର କାନ୍ତି ଯୁକ୍ତ ସୁମିତ୍ରା ନନ୍ଦନ ସ୍ୱପ୍ନାବସ୍ଥା ଶତ୍ରୁଘ୍ନ ସ୍ୱମର ସସ୍ୱର ଯୁକ୍ତହସ୍ତ

ପଦବନ୍ଦେ ହନୁ ସେ ବଡ଼ ମହୀୟାନ = ଜ୍ଞାନୀ ଅଗ୍ରଗଣ୍ୟ ଅତୁଳିତ ପରାକ୍ରମଶାଳୀ ଯୋଗେନ୍ଦ୍ର ମୌଳି ପରମ ଭକ୍ତ ଆଞ୍ଜନେୟ ସତତ ପଦ ବନ୍ଦନ ରତ ସେହି ମହୀୟାନ ପରମ ପାଦ ଯାର କରରଚ

ପରମ ସୁନ୍ଦର ଅନୁପମ ମାଧୁର୍ଯ୍ୟ ଭରା କନକ ଗୌର କାନ୍ତି ଯୁକ୍ତ ସୁମିତ୍ରାନନ୍ଦନ ଶତ୍ରୁଘ୍ନ ସ୍ୱମର ସଂଯୁକ୍ତ ହସ୍ତ ଏବଂ ବକ୍ଷସ୍ଥର ସ୍ୱପ୍ନାବସ୍ଥା । ଜ୍ଞାନୀ ଅଗ୍ରଗଣ୍ୟ ଅତୁଳିତ ପରାକ୍ରମଶାଳୀ ଯୋଗେନ୍ଦ୍ର ମୌଳୀ ପରମ ଭକ୍ତ ଆଞ୍ଜନେୟ ସତତ ପଦବନ୍ଦନ ରତ । ଏହାଙ୍କୁ ବାସ୍ତବ ସୌନ୍ଦର୍ଯ୍ୟ ଚନ୍ଦ୍ରିକା "ମହତ" ପରମ ପଦ ସେବା ।

ଓଁ

**ତିନି ଲୋକ ଦେବ ଅଛନ୍ତି ଠୁଳ**
**ସୁରାସୁର ନର ବାନର କୁଳ ॥**

\+ \+ \+

ତିନିଲୋକ ଦେବ ଅଛନ୍ତି ଠୁଳ — ଚରାଚର ବିଶ୍ୱବାସୀ ଏହି ମନୋଜ୍ଞ ମଣ୍ଡପର ଦର୍ଶନ ଲାଳସୀ ହୋଇ ସମବେତ ହୋଇଅଛନ୍ତି ।
ସୁରାସୁର ନର ବାନର କୁଳ — ଅଗଣିତ ଦେବ, ରକ୍ଷ, ନର; ବାନର କୁଳର ସମ-ବେତରେ ମନୋରମା ସାକେତ ନଗରୀ ପୂର୍ଣ୍ଣ କାମ ପ୍ରାଣାରାମମୟ ହୋଇ ଉଠିଛି ।

ଚରାଚର ବିଶ୍ୱବାସୀ, ଏହି ମନୋଜ୍ଞ ମଣ୍ଡପରେ ଦର୍ଶନ ଲାଳସୀ ହୋଇ ସମବେତ ହୋଇଅଛନ୍ତି । ଅଗଣିତ ଦେବ, ରକ୍ଷ, ନର ଓ ବାନର କୁଳର ସମାବେଶରେ ମନୋରମା ସାକେତ ନଗରୀ ପୂର୍ଣ୍ଣକାମ ପ୍ରାଣାରାମ ମୟ



## ଚଉରାଶି ଲକ୍ଷ ଯୋନି ଭ୍ରମଣ
## ସରିଯିବ ଦେଖି ସୀତା ରମଣ ॥

\+ \+ \+

ଚଉରାଶି ଲକ୍ଷ ଯୋନି ଭ୍ରମଣ — ଜୀବ ଚଉରାଶି ଲକ୍ଷ ଯୋନି ପରିଭ୍ରମଣ କରି ମଧ୍ୟ (ଅନନ୍ତ ଜନ୍ମ ଜନ୍ମାନ୍ତର ପରେ) ଏ ଭବଚକ୍ରରୁ (ଏ ସଂସାର ଚକ୍ରରୁ ମୁକ୍ତି ଲାଭ କରି ପାରେନା।

ସରିଯିବ ଦେଖି ସୀତା ରମଣ— ମାତ୍ର ଏ କୃପା ପାରାବାର ସୌନ୍ଦର୍ଯ୍ୟ ରତ୍ନାକରର ପଦାରବିନ୍ଦ ଥରେ ଦର୍ଶନ କଲେ ଅଶେଷ ଜନ୍ମ ଜନ୍ମାନ୍ତରର ପାପ ପ୍ରକ୍ଷ୍ୟାଳନ ପୂର୍ବକ ପରମ ପଦକୁ ପ୍ରାପ୍ତ ହୋଇ ଥାଏ

ଜୀବ ଚଉରାଶି ଲକ୍ଷ ଯୋନି ପରିଭ୍ରମଣ କରି ମଧ୍ୟ ଏ ସଂସାର ଚକ୍ରରୁ ଉଦ୍ଧାର ଲାଭ କରି ପାରେନାହିଁ। ମାତ୍ର ଏ କୃପାସିନ୍ଧୁ ସୌନ୍ଦର୍ଯ୍ୟ ରତ୍ନାକରର ପଦାରବିନ୍ଦରେ ଥରେ ଦର୍ଶନ କଲେ ଜନ୍ମାଜନ୍ମାନ୍ତର ଅର୍ଜିତ ପାପ ପ୍ରକ୍ଷ୍ୟାଳନ ପୂର୍ବକ ପରମ ପଦକୁ ପ୍ରାପ୍ତ ହୋଇଥାଏ।

ଓଁ

## ଆହା କି ଶ୍ୟାମଳ ଅବଧ ଭୂପ
## କେଡେ ଚେତେ ଉଠେ ମଙ୍ଗଳ ଧୂପ ।

+ + +

ଆହା କି ଶ୍ୟାମଳ ଅବଧ ଭୂପ = ଆହା କି
ମନୋହର ମରକତ ମଣି ସମାନ କାନ୍ତିମାନ
(ସଚ୍ଚିଦାନନ୍ଦ ଘନ) ଶାନ୍ତାକାର ପରମ ପାବନ
ପରମାତ୍ମା । ଏ ସାକେତ ନରପତି ଚୂଡ଼ାମଣି
କେଡେ ଚେତେ ଉଠେ ମଙ୍ଗଳ ଧୂପ — ପବିତ୍ର
ହୃଦୟରେ ନିତ୍ୟ ବିରାଜମାନ: ପରଂବ୍ରହ୍ମର
ଦର୍ଶନ କର ।
ଏ ମଙ୍ଗଳ ଧୂପ—ଯେ ଅବ୍ୟକ୍ତ ନିଜ କୃପାରେ
ଯେ ନିଜେ ଅବତୀର୍ଣ୍ଣ ରହିଛନ୍ତି ।

ଆହା କି ମନୋହର ମରକତ ମଣି ସମାନ କାନ୍ତିମାନ
ସଚ୍ଚିଦାନନ୍ଦ ଘନ ଶାନ୍ତାକାର ପରମ ପାବନ ପରମାତ୍ମା
ଏ ସାକେତ ନରପତି ଚୂଡ଼ାମଣି । ପବିତ୍ର ହୃଦୟରେ
ନିତ୍ୟ ବିରାଜମାନ ପରଂବ୍ରହ୍ମର ଦର୍ଶନ ଲାଭ କର ।
ଯେ ନିଜର ଅହେତୁକ କୃପାରେ ନିଜେ ମଙ୍ଗଳ ଧୂପ
ରୂପ ପ୍ରତ୍ୟକ୍ଷ ଅବତୀର୍ଣ୍ଣ ଅଛନ୍ତି ।।

ଓଁ

**ନମେ ବାଲମିକୀ ବେଦବ୍ୟାସରେ**
**ନମଇଁ ତୁଳସୀ ପାଦ ପାଶରେ ॥**

\+ \+ \+

ନମେ ବାଲମିକି ବେଦବ୍ୟାସରେ — ମୁଁ କୃତାଞ୍ଜଳି ପୂର୍ବେ ପରମ ଗୁରୁ ମହାମୁନି ବାଲ୍ମୀକଙ୍କ ଓ ବେଦବ୍ୟାସଙ୍କୁ ସହସ୍ର ସହସ୍ରବାର ପ୍ରଣାମ କରୁଅଛି ।
ନମଇଁ ତୁଳସୀ ପାଦ ପାଶରେ—ପୁନଃ ପରମ ଜ୍ଞାନୀ ଭକ୍ତ ଚୂଡ଼ାମଣି ରାମ ରସ ରତ୍ନାକର ମହାକବି ତୁଳସୀଙ୍କ ପରମ ପାଦରେ ସହସ୍ର ସହସ୍ରବାର ପ୍ରଣାମ କରୁଅଛି ।

ମୁଁ କୃତାଞ୍ଜଳି ପୂର୍ବରେ ପରମ ଗୁରୁ ମହାମୁନି ବାଲ୍ମୀକଙ୍କ ଓ ବେଦବ୍ୟାସଙ୍କୁ ସହସ୍ର ସହସ୍ରବାର ପ୍ରଣାମ କରୁଅଛି । ପୁନଃ ପରମ ଜ୍ଞାନୀ ଭକ୍ତ ଚୂଡ଼ାମଣି ରାମରସ ରତ୍ନାକର ତୁଳସୀଙ୍କ ପରମ ପାଦରେ ସହସ୍ର ସହସ୍ର ବାର ପ୍ରଣାମ କରୁଅଛି ।

ଓଁ

## ଉତ୍ତର ଯୋଗିନୀ କଣ୍ଠି ନିଚୟ
## ମହିମାରେ ଦେଲେ ସ୍ୱ ପରିଚୟ ॥

\+ \+ \+

ଉତ୍ତର ଯୋଗିଙ୍କର କଣ୍ଠି ନିଚୟ (କଣ୍ଠିମାଳା) ନିଜ ମହିମାରେ ନିଜର ପରିଚୟ ପ୍ରଦାନ କଲେ

ଏ ତତ୍ତ୍ୱ କଣ୍ଠିମାଳା ଉତ୍ତର ଯୋଗିଙ୍କ ପରମ ତତ୍ତ୍ୱର ମହିମା ବର୍ଣ୍ଣନରେ ଆତ୍ମ ନିବେଦିତା ଅଟନ୍ତି । ଅର୍ଥାତ୍ ଭକ୍ତକଣ୍ଠି ଏକ ଆତ୍ମତତ୍ତ୍ୱର ପରିଚୟ ଅଟେ ॥

ଓଁ

## ମହା ସାରସ୍ୱତ ମହିମା ତୂରୀ
## ଘୁଟେ ନଘୋଷିଲା କବି ଚାତୁରୀ ॥

+ + +

+ + +

ଶିଷ୍ୟ କୃପାକୃତ ଏ ମହତ୍ ଗ୍ରନ୍ଥ ମହାନ୍
ସାରସ୍ୱତ ପୀଠରେ ମର୍ଯ୍ୟାଦା ପୁରୁଷୋତ୍ତମ
ରଘୁକୁଳ ତିଳକ ଆନନ୍ଦ ଘନ ଶ୍ରୀରାମଚନ୍ଦ୍ର
ଭଗବାନଙ୍କ ମହିମା ତୃଷା ସ୍ୱରୂପ ଅଟେ । ଭାବ
ଗଦ୍ ଗଦ୍ କଣ୍ଠରେ ଶ୍ରୀରାମ ଏହି ପବିତ୍ର ନାମକୁ
ସ୍ମରଣ କରି କବି ବର୍ଣ୍ଣ ବିଭୂଷାର ମାଧ୍ୟମରେ
ପରମ ବର୍ଣ୍ଣ ହୃଦୟର (ରା ଓ ମ ର) ମହିମା
ଗାନ କଲ୍ପ ।

ଏହା ତତ୍ତ୍ୱ ସାରସ୍ୱତ ରା ଓ ମ ର ମହିମା ତୃଷା
ଅଟେ । କବି ବର୍ଣ୍ଣ ବିଭୂଷାର ମାଧ୍ୟମରେ ଏ ପରମ
ବର୍ଣ୍ଣ ହୃଦୟର ପରମ ମହିମାକୁ ମୁଗ୍ଧ କଣ୍ଠରେ ଗାନ
କଲ୍ପ ।

ଓଁ

# ତୁରୀୟ , ସୁଷୁପ୍ତି ସ୍ୱପ୍ନ ଜାଗ୍ରତ
# ସନ୍ଥ ନେତ୍ରେ ହେଲ୍ ଅଞ୍ଜନାକୃତ ।

\+ \+ \+

ତୁରୀୟ—ଯୋଗମାୟା ଓ ଯୋଗପୁରୁଷଙ୍କାରର ପରମ ମିଳନରେ ଯେଉଁ ମହା ବ୍ରହ୍ମଜ୍ୟୋତିର ଉଦ୍‌ଗମନ ହୁଏ । "ସୀତା ରାମ" ଭରତ ସୁଷୁପ୍ତି ସ୍ୱପ୍ନ = ଶତ୍ରୁଘ୍ନ, ଜାଗ୍ରତ = ଲକ୍ଷ୍ମଣ । ସନ୍ଥମାନଙ୍କ ନେତ୍ରରେ ଅଞ୍ଜନା କୃତ ହେଲେ । ଏ ମନୋଜ୍ଞ ପୀଠ ଦର୍ଶନରେ ଜ୍ଞାନ ଚକ୍ଷୁର ପ୍ରକାଶ ଘଟିଲ ।

ତୁରୀୟ ସୁଷୁପ୍ତି ସ୍ୱପ୍ନ ଜାଗ୍ରତ ଏକ ପରମ ତତ୍ତ୍ୱର ଚତୁର୍ଧା ପ୍ରକାଶ । ଯୋଗମାୟା ଓ ଯୋଗପୁରୁଷାକାରର ପରମ ମିଳନରେ ଯେଉଁ ମହାବ୍ରହ୍ମ ଜ୍ୟୋତିର ଉଦ୍‌ଗମନ ହୁଏ, ତାହାହିଁ ସୀତା-ରାମ । ଯେଉଁ ମନୋଜ୍ଞ ପୀଠରେ ର ଓ ମ ରୂପ ପରମତତ୍ତ୍ୱ ବିରାଜମାନ ତାହାହିଁ ଦର୍ଶନ କର । ଏହି ରାମ ସନ୍ଥ ମାନଙ୍କ ନେତ୍ରରେ ଅଞ୍ଜନା କୃତି ଅଟନ୍ତି ।

ଓଁ

# ନ ହେ ବ୍ୟାକରଣ କି ଅଳଙ୍କାର
# ନ ହିଁ ଇ ସାହିତ୍ୟ; ଦର୍ଶନସାର ॥

+ + +

ଏହି ମହତ୍ ଗ୍ରନ୍ଥ—କ୍ଳିଷ୍ଟ ବ୍ୟାକରଣ ଶାସ୍ତ୍ର ନୁହେଁ ।
କି ଏହା ସାହିତ୍ୟର ପ୍ରକୃତ ପର୍ଯ୍ୟାପ୍ତ ମଧ୍ୟ ନୁହେଁ । ଏହା ଦର୍ଶନରେ ଶ୍ରେଷ୍ଠ ଦର୍ଶନ ଅଟେ ।
ଏହାର ଉପଦେଶ ପରମ ଦର୍ଶନାକରର କୃପା ବିନା କଦାପି ସମ୍ଭବ ନୁହେଁ ।

ଏ ମହତ୍ ଗ୍ରନ୍ଥ ବ୍ୟାକରଣ କି ସାହିତ୍ୟର ଆଧାର ନୁହେଁ । ଏହା ଯୋଗ ରେଖା, ପରମ ତତ୍ତ୍ୱସାର ଦର୍ଶନ ଅଟେ । ପରମ କରୁଣାନିଧିର କରୁଣା ବିନା ଏ ମହତ୍ ଗ୍ରନ୍ଥର ଉପଲବ୍ଧି ସହଜ ସାଧ୍ୟ ନୁହେଁ ।

||୨୩୫||

ଓଁ

**ତତ୍ତ୍ୱ ଚିନ୍ତାମଣି ଅମୂଲ୍ୟ ନିଧି**
**ଭ୍ରାନ୍ତ ନୁହଁ ବୁଝ ଯାଇ ସିଦ୍ଧି ।**

\+ + +

ଏହି ମହତ୍ ଗ୍ରନ୍ଥ ତତ୍ତ୍ୱ ଚିନ୍ତାମଣି ରୂପ ଅମୂଲ୍ୟ ନିଧି ଅଟେ । ଏଥିରେ ବିଷୟ ଉପର ବର୍ଣ୍ଣନା ନଥିବାରୁ ହେ ପଣ୍ଡିତବର୍ଗ ଏ ଗ୍ରନ୍ଥ ପ୍ରବେଶରେ କ୍ଲିଷ୍ଟତା ଅନୁଭବ କରିବେ । ଏଣୁ ପ୍ରଥମରେ ସଂ ପ୍ରତି ଅନୁରାଗ ଜନ୍ମାଇ ଗୁରୁକୃପା ଲାଭ କରନ୍ତୁ । ଏହା ଅବ୍ୟକ୍ତ ମଣିର ଦର୍ଶନ ଲାଭ ହେବ ।

ଏ ମହତ୍ ଗ୍ରନ୍ଥ ରାମରସ ରତ୍ନାକର ତତ୍ତ୍ୱ ଚିନ୍ତାମଣି ରୂପ ଅମୂଲ୍ୟ ନିଧି ଅଟଇ । ହେ ଧୀ ମଣ୍ଡଳୀ ଏହି ପ୍ରକାଶମାନ ଗ୍ରନ୍ଥରେ ବିଷୟ ରସ ବର୍ଣ୍ଣନା ନ ଥିବାରୁ ପ୍ରବେଶରେ କ୍ଲିଷ୍ଟତା ଅନୁଭବ କରିପାରେ । ଏଣୁ କୃତାଞ୍ଜଳି ପୂର୍ବକ ନିବେଦନ କରୁଅଛି, ସତ୍ ପ୍ରତି ଅନୁରାଗ ଜନ୍ମାଇ ଗୁରୁକୃପା ଲାଭ ପୂର୍ବକ ଏ ମହତ ଦର୍ଶନରେ ଅମୂଲ୍ୟ ମଣିର ସନ୍ଧାନ କରନ୍ତୁ ।

